ନିର୍ମଳ ହାସ୍ୟରସର

ନାଟକ

# କଂପାନୀ ଦାୟୀ ନୁହେଁ

ଗୋପାଳ ଚନ୍ଦ୍ର ପଟ୍ଟନାୟକ

# କଂପାନୀ ଦାୟୀ ନୁହେଁ

ରଚନା
ଗୋପାଳ ଚନ୍ଦ୍ର ପଟ୍ଟନାୟକ
ସି/୨୨, ବକ୍ସି ଜଗବନ୍ଧୁ ନଗର
ଭୁବନେଶ୍ୱର - ୧୪
ଦୂରଭାଷ - ୨୪୩୧୮୧୮

ପ୍ରକାଶନା
ବର୍ମା ପ୍ରିଣ୍ଟର୍ସ ଆଣ୍ଡ ପବ୍ଲିଶର୍ସ
୨୧୩୨/୪୮୬୯, ନାଗେଶ୍ୱର ଟାଙ୍ଗୀ
ଭୁବନେଶ୍ୱର - ୨
ଦୂରଭାଷ - ୨୪୩୩୮୮

ମୁଦ୍ରଣ
ଡୁଡୁଲି ପ୍ରୋସେସ୍ ଆଣ୍ଡ ଅଫ୍‌ସେଟ୍
ବାପୁଜୀ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ - ୨୦୦୩

ମୂଲ୍ୟ - ଟ. ୨୪/-

# କିଛି ସାମାନ୍ୟ ସୂଚନା

ଏ ନାଟକଟି ଲେଖା ହୋଇଥିଲା ଆକାଶବାଣୀର ୧୯୯୫ ମସିହାର ସପ୍ତାହବ୍ୟାପୀ ନାଟକ ସମାରୋହ ପାଇଁ । ସେତେବେଳେ ତାର ଅବଧି ଥିଲା ମାତ୍ର ଘଣ୍ଟେ । ପ୍ରସାରିତ ହେଲା ପରେ ନାଟକଟି ଶ୍ରୋତାମାନଙ୍କୁ ଭାରି ଭଲ ଲାଗିଥିଲା । ମୋତେ କିଛି ପ୍ରଶଂସା ବି ମିଳିଥିଲା । ସେଇ ଭଲ ଲାଗିବା କାରଣରୁ ନାଟକଟି ବାରମ୍ବାର ପୁନଃପ୍ରସାରିତ ମଧ୍ୟ ହୋଇଛି ।

ବହି ଆକାରରେ ପ୍ରକାଶିତ ହେବା ପାଇଁ ମୁଁ ତାର ବିସ୍ତୃତ ପରିମାର୍ଜନ ଓ ପରିବର୍ଦ୍ଧନ କରିଛି । ଏବେ ତାର ଅବଧି ତିନିଘଣ୍ଟା ବା ତହିଁରୁ କିଛି ବେଶୀ ହେବ । ବସ୍ତୁତଃ, ଏ ନାଟକ ଏଯାବତ୍ ଓଡ଼ିଆ ଭାଷାରେ ଲିଖିତ / ପ୍ରକାଶିତ ହାସ୍ୟନାଟକମାନଙ୍କ ମଧ୍ୟରେ ଦୀର୍ଘତମ ବୋଲି ମୋର ବିଶ୍ୱାସ ।

ମୋର ହାସ୍ୟନାଟକ ଲେଖାର ଗୋଟିଏ ମୌଳିକ ନିୟମ ହେଲା ଯେ ନାଟକଟି ଆରମ୍ଭରୁ ଶେଷଯାଏ ହାସ୍ୟରସରେ ମୋଡ଼ା ହୋଇଥିବ ଓ ହାସ୍ୟବର୍ଜିତ କିଛି ତା ଭିତରେ ରହିବ ନାହିଁ । ଏ ନିୟମଟିକୁ ମୁଁ ମୋର ହାସ୍ୟ ନାଟକ ଲେଖା ଆରମ୍ଭରୁ ଅର୍ଥାତ୍ ୧୯୭୮ ମସିହାରୁ ରକ୍ଷା କରି ଆସିଛି । ଦୀର୍ଘତା ସତ୍ତ୍ୱେ ଏ ନାଟକରେ ମଧ୍ୟ ସେ ନିୟମକୁ ମୁଁ ପାଳନ କରିବାର ଚେଷ୍ଟା ସହ ନାଟକକୁ ମଞ୍ଚୋପଯୋଗୀ କରିଛି । ମୋର ବିଶ୍ୱାସ ନାଟକଟି ସଫଳଭାବେ ମଞ୍ଚାୟିତ ହୋଇପାରିବ ଓ ପଢାଗଲେ ମଧ୍ୟ ସମାନ ଭାବରେ ଆମୋଦ ଦେଇପାରିବ ।

ନାଟକଟିଏ ମଞ୍ଚାୟିତ କରିବା ଏବେ ଭାରି କଷ୍ଟସାଧ୍ୟ ହୋଇ ପଡ଼ିଲାଣି । ତଥାପି ଆପଣଙ୍କୁ ଆମନ୍ତ୍ରଣ, ଏ ନାଟକଟିକୁ ମଞ୍ଚାୟିତ କରିବାର ଚେଷ୍ଟା କରନ୍ତୁ । ନ ହେଲେ ଅନ୍ତତଃ ନିଜ ଘରେ ଆରାମରେ ବସି ପଢନ୍ତୁ । ମନେ ମନେ ଅଭିନୟ କରି କରି ପଢନ୍ତୁ ଆଉ ହସନ୍ତୁ । ଅନ୍ୟମାନଙ୍କୁ ପଢିବାକୁ ଆମନ୍ତ୍ରଣ କରନ୍ତୁ । ସେମାନେ ବି ପଢନ୍ତୁ ଆଉ ହସନ୍ତୁ । ଖୁସି ହୁଅନ୍ତୁ - ଆପଣମାନେ । ସେମାନେ । ସମସ୍ତେ ।

ବିନୀତ
ଲେଖକ

## ଲେଖକୀୟ ପରିଚିତି

ହାସ୍ୟ ଓ ସିରିୟସ ନାଟକ ଏବଂ ଗଳ୍ପ ଓ ଉପନ୍ୟାସ ରଚନାରେ ବ୍ୟାପୃତି । ନାଟକ ରଚନା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୯୦) । ପ୍ରଥମ ନିଖିଳ ଭାରତ ବେତାର ନାଟକ ରଚନା ପ୍ରତିଯୋଗିତାରେ ଓଡ଼ିଆ ଭାଷାରେ ପ୍ରଥମ ପୁରସ୍କାର (୧୯୮୭) । ୧୯୮୯, ୧୯୯୨, ୧୯୯୫ ପ୍ରତିଯୋଗିତାର ଏକକ (ଶ୍ରେଷ୍ଠ) ପୁରସ୍କାର ବିଚାରାଧୀନ । କଟକ ଆକାଶବାଣୀ / ମନନ ନାଟ୍ୟସଂସ୍ଥା / ଗଣକବି ବୈଷ୍ଣବ ପାଣି ସମ୍ମାନ ୨୦୦୨/୨୦୦୩/୨୦୦୪ ।

### ନାଟକ ସଂକଳନ

**ହାସ୍ୟ**

ମୁଁ ହିରୋ ହେବି
ଦିନେ ଖରାବେଳେ
ବିବି ଓ ବଡ଼ବାବୁ ଓ ଅନ୍ୟାନ୍ୟ ହାସ୍ୟନାଟିକା
ନୀତା ନୟନା ସଂବାଦ

**ସିରିୟସ**

ସମୁଦ୍ର ମନ୍ଥନ
ସ୍ୱପ୍ନପୁରୁଷ

### ଗଳ୍ପ ସଂକଳନ

ଦିହୁଡ଼ି
କୁହୁଡ଼ି
ପଞ୍ଜୁରି ପକ୍ଷୀ
ସଫା ହାତର ବାସ୍ନା

ସବୁ ରାସ୍ତା ଏକା ଏକା

### ମଞ୍ଚ /ବେତାର / ଦୂରଦର୍ଶନ ପାଇଁ ଲିଖିତ ନାଟକ / ନାଟିକା

**ସିରିୟସ**

ବକ୍ଷମର୍ମର
ଆହୁତି
ବିନ୍ଦୁ ଓ ସିନ୍ଧୁ
ସମୁଦ୍ର ମନ୍ଥନ
ଶୁଦ୍ଧ ସୁବର୍ଣ୍ଣ ବରନା
ସୁନା ସଂସାର
ଅନାଗତ ସୁକନ୍ୟାର କାହାଣୀ
ପାଦତଳ ବାଲୁବନ୍ତ
ଜତୁଗୃହର ଅଗ୍ନି
ସ୍ୱପ୍ନପୁରୁଷ
ସବୁ ରାସ୍ତା ଏକା ଏକା
ଅନ୍ୟ ଏକ ଶୋଭାଯାତ୍ରା

**ହାସ୍ୟ**

ଦିନେ ଖରାବେଳେ
କରୁଣାମୟ
ଇକାର ଭେଦ ଶବଦ
ମୁଁ ହିରୋ ହେବି
ମୁଁ ବାଆଙ୍କା ହେବି
ସୁରମାଙ୍କ ଚାବିକାଠି ଓ ତାଙ୍କ ହେତୁ

ମାତ୍ର ମାଧ ଓ ମାଛ ମଞ୍ଜି
ଲାଇବେରୀ ଚାନ୍ଦା
ବିବି ଓ ବଡ଼ବାବୁ
ସମ୍ପାଦକଙ୍କ ଦପ୍ତରରୁ
କାଛ ଓ କଣ୍ଠାର ପ୍ରସଙ୍ଗ
ନୀତା ନୟନା ସମ୍ବାଦ
ଗୁଣିଆ ଝାଡ଼େଣୀ ମନ୍ତ୍ର
କମ୍ପାନୀ ଦାୟୀ ନୁହେଁ
ସୁନା ନବ ଗୋ ସୁନା
ଅପ୍ରେସନ ଏକାଅଣୀ କେଜି
ସଭା
ଓଡ଼ିଶା ଅୟେଲ କମ୍ପାନୀ
କାନ୍ତା ବିନା ଦିବା ରଜନୀ (ଛଅ ଅଧ୍ୟାୟ)
ଦେବ ସୁରମା ସମ୍ବାଦ (ଛଅ ଅଧ୍ୟାୟ)
ସଂସାର ନାବ (ଆଠ ଅଧ୍ୟାୟ)
କିଛି ହସ କିଛି ନାଟକ, (ତେରଅଧ୍ୟାୟ)
ଏକ ଭୁଲ ଛକର ନାଟକ
ଲୋକେ ଯଃ କହନ୍ତି
ଘରଭଡ଼ା

## - ହସି ହସେଇବାର ଗପ -

ଏ ସଂକଳନଟି ମୋର ଚତୁର୍ଥ ହାସ୍ୟନାଟକ ସଂକଳନ ଓ ପଞ୍ଚମ ନାଟ୍ୟ ସଂକଳନ । ଏଥିରେ ସନ୍ନିବିଷ୍ଟ ନାଟକଗୁଡ଼ିକର ବିସ୍ତୃତ ପରିମାର୍ଜନ ଓ ପରିବର୍ଦ୍ଧନ କରାଯାଇ ସେଗୁଡ଼ିକର ମଂଚ ଉପଯୋଗୀତା ବୃଦ୍ଧି କରାଯାଇଛି ଏବଂ ହାସ୍ୟବିଭାବ ଓ ବିଭବ ଆହୁରି ଉଜ୍ଜ୍ୱଳ ଓ ପ୍ରଚୁର କରାଯାଇଛି । ମୁଁ ଆଶା କରୁଛି ପଠିତ ହେଲେ ମଧ ଏ ନାଟକଗୁଡ଼ିକ ଅନୁରୂପ ପଠନ - ଆନନ୍ଦ ଦେବାକୁ ସକ୍ଷମ ହେବେ ।

ଏ ସଂକଳନରେ ଅନ୍ତର୍ଭୁକ୍ତ ନାଟକ ନୀତା ନୟନା ସମ୍ବାଦ ୧୯୯୨ ମସିହାରେ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପରେ ଅନୁଭୂତି ନାଟ୍ୟସଂସ୍ଥା ଦ୍ୱାରା "କି କରିପାରିବ ପୁଲିସି" (ଅବଧି ଘଣ୍ଟେ ପଇଁଚାଳିଶ ମିନିଟ) ନାମରେ ସଫଳତାର ସହ ମଞ୍ଚସ୍ଥ ହୋଇଥିଲା । ଅନ୍ୟ ଏକ ନାଟକ "ଅପ୍ରେସନ ଏକାଅଶୀ କେଜି"(ଅବଧି ଦୁଇଘଣ୍ଟା) ଭୁବନେଶ୍ୱରର ନିୟମିତ ନାଟକ ପ୍ରଦର୍ଶନରେ ନିଷ୍ଠାପର ଭାବେ ବ୍ୟାପୃତ ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟଦ୍ୱାରା ଭଞ୍ଜ କଳାମଣ୍ଡପରେ ଜୁଲାଇ ୩୦ରୁ ସେପ୍ଟେମ୍ବର ୧୯, ୨୦୦୪ ପର୍ଯ୍ୟନ୍ତ ଆଠ ସପ୍ତାହ (ସପ୍ତାହରେ ତିନିଦିନ) କ୍ରମାଗତ ଭାବେ ମଞ୍ଚସ୍ଥ ହୋଇ ବହୁ ଦର୍ଶକପ୍ରୀତି ଓ ପ୍ରଶଂସା ଅର୍ଜନ କରିପାରିଛି । ମଞ୍ଚାୟନର ଆବଶ୍ୟକତା ଦୃଷ୍ଟିରୁ ଯେଉଁ କିଛି ପରିମାର୍ଜନ ଓ ସଂଯୋଜନ (ମୁଖ୍ୟତଃ ଲିଲି ଚରିତ୍ରରେ) ଉକ୍ତ ସଂସ୍ଥାଦ୍ୱାରା କରାଯାଇଥିଲା ତାହା ମୁଁ ଏ ମୁଦ୍ରିତ ନାଟକରେ ଅନ୍ତର୍ଭୁକ୍ତ କରିଛି । ମୁଁ ଏଇ ଅବସରରେ ନାଟକର ସେ ଉଚ୍ଚ ପ୍ରଶଂସା ଜଡ଼ିତ ସାଫଲ୍ୟ ପାଇଁ ଦାୟୀ ସମସ୍ତ ଅଭିନୟ କୁଶଳୀ ଶିଳ୍ପୀମାନଙ୍କୁ ଓ ଦକ୍ଷ ଏବଂ ଅଭିଜ୍ଞ ନିର୍ଦ୍ଦେଶକ ଶ୍ରୀ ରବି ତ୍ରିପାଠୀଙ୍କୁ ତଥା ଯଶସ୍ୱୀ ଏବଂ ବିଦଗ୍ଧ ପ୍ରଯୋଜକ ଶ୍ରୀଯୁକ୍ତ ଅନନ୍ତ ମହାପାତ୍ରଙ୍କୁ ମୋର ସଶ୍ରଦ୍ଧ କୃତଜ୍ଞତା ଜଣାଉଛି । ଏ ସଂକଳନର ତୃତୀୟ ନାଟକ "କଂପାନୀ ଦାୟୀ ନୁହେଁ" (ଅବଧି ଏକ ଘଣ୍ଟା) ୧୯୯୫ର ବେତାର ନାଟକ ଉତ୍ସବରେ ଉପସ୍ଥାପିତ ହୋଇ ବହୁ ଶ୍ରୋତାଜନ - ପ୍ରୀତି ଲାଭ କରିଛି ଓ ବାରମ୍ବାର ପୁନଃପ୍ରସାରିତ ହୋଇଛି । ଏ ପ୍ରକାଶନ ପାଇଁ ବିସ୍ତୃତ ପରିମାର୍ଜନ ଓ ପରିବର୍ଦ୍ଧନ କରାଯାଇ ତାକୁ ମଂଚାୟନ ଉପଯୋଗୀ ଓ ଅଧିକ ହାସ୍ୟ ଉଚ୍ଛଳ କରାଯାଇଛି । ବର୍ତ୍ତମାନ ତାର ଅବଧି ପ୍ରାୟ ତିନିଘଣ୍ଟା ଓ ସମ୍ଭବତଃ ଏଯାବତ୍ ଓଡ଼ିଆରେ ଲିଖିତ / ପ୍ରକାଶିତ ସମସ୍ତ ହାସ୍ୟନାଟକ ମଧ୍ୟରେ ଦୀର୍ଘତମ । ମଂଚାୟିତ ହେଲେ ଏ ନାଟକ ମଧ ଦର୍ଶକମାନଙ୍କୁ ଯଥେଷ୍ଟ ନାଟ୍ୟାମୋଦ ଦେବାକୁ ସକ୍ଷମ ହେବ ବୋଲି ମୋର ବିଶ୍ୱାସ ।

ଲଘୁ ହାସ୍ୟରସ ନୁହେଁ, ମୁଁ ଉଜ୍ଜ୍ୱଳ କିନ୍ତୁ ନିର୍ମଳ ହାସ୍ୟରସରେ ବିଶ୍ୱାସ କରେ । ମନଖୋଲା ହାହା ହୋହୋର ହସ । ମୋ ନାଟକର ଆରମ୍ଭ ହାସ୍ୟରସରେ, ଶେଷ ମଧ ହାସ୍ୟରସରେ । ଯେତେ ଦୂର ସମ୍ଭବ, ହାସ୍ୟ-ବର୍ଜିତ କୌଣସି ସଂଳାପ ବା ଘଟନା ମୋ ନାଟକରେ ମୁଁ ରଖେନାହିଁ ।

ଓଡ଼ିଆରେ ସଫଳ ନାଟକର ସଂଖ୍ୟା ଭାରି ସୀମିତ । ପୂର୍ଣ୍ଣାଙ୍ଗ ନାଟକ ଦୂରେ ଥାଉ ସିରିୟସ ନାଟକମାନଙ୍କରେ ହାସ୍ୟ ଅନୁସଙ୍ଗ ବା ହାସ୍ୟ ବିରାମ (Comic Relief) ଟିଏ ମଧ ନଥାଏ । ହାସ୍ୟ ନାମରେ ବ୍ୟଙ୍ଗର ମୁକ୍ତ ଅନୁପ୍ରବେଶ ହେଉଛି । ଆମ ଜୀବନରୁ ହାସ୍ୟ କ୍ରମଶଃ ବିରଳ ହୋଇ ଆସିଲାଣି । ମୁଁ ଗତ ପଚିଶ ବର୍ଷ ହେବ କ୍ରମାଗତ ଭାବେ କିଛି ସାଫଲ୍ୟ ଓ ପ୍ରଶଂସାର ସହ ହାସ୍ୟନାଟକ ଲେଖି ପାଠକ / ଶ୍ରୋତା / ଦର୍ଶକମାନଙ୍କୁ କିଛି ହାସ୍ୟାମୋଦ ଦେଇ ଆସିଛି । ଲେଖିପାରୁଥିବା ଯାକେ ମୋର ଏ ଚେଷ୍ଟା ଜାରି ରହିବ ।

ଜୀବନରେ ହସ କି ଭଳି ଅନିବାର୍ଯ୍ୟ ଭାବେ ଦରକାରୀ ସେ ସମ୍ପର୍କରେ ମୁଁ ଅନ୍ୟତ୍ର ଲେଖିସାରିଛି । ଏଠାରେ ନିମ୍ନରେ ମୁଁ ମୋର ପୂର୍ବ ପ୍ରକାଶିତ ସଂକଳନ ବିବି ଓ ବଡ଼ବାବୁ ଓ ଅନ୍ୟାନ୍ୟ ହାସ୍ୟନାଟିକାର ମୁଖବନ୍ଧଟି ଏଠାରେ ଉଦ୍ଧାର କରୁଛି ।

ଅନେକ ଦିନ ତଳର କଥା । ଗୋଟିଏ ରାଜ୍ୟରେ ଜଣେ ରାଜା ଥିଲେ । ସେ ଭାରି କଡ଼ା । ଭାରି ରାଗୀ । ପ୍ରଜାମାନେ ତାଙ୍କୁ ଭାରି ଭୟ କରୁଥିଲେ । ତାଙ୍କ ଆଗରେ ଛିଡ଼ା ହେଲେ ସେନାପତିଙ୍କର ବି ଗୋଡ଼ ଥରୁଥିଲା । ରାଜା ଥରେ ଛଦ୍ମ ବେଶରେ ରାଜ୍ୟଯାକ ଯାକ ବୁଲି ଆସିଲେ । ଫେରି ମନ୍ତ୍ରୀଙ୍କୁ ଡାକି କହିଲେ - ମନ୍ତ୍ରୀ ! ଆମ ରାଜ୍ୟରେ ଏତେ ଜଂଜାଳ ଏତେ ସମସ୍ୟା । ଶତ୍ରୁ ଭୟ । ଅନାବୃଷ୍ଟି । ଚୋରଚୋଳ । ରୋଗବ୍ୟାଧି । ଅଥଚ ଏ ମୂର୍ଖ ପ୍ରଜାମାନଙ୍କର ସେଥିକି କିଛି ଚିନ୍ତା ନାହିଁ - ସେମାନେ ହସଖୁସି ନାଚଗୀତରେ ମାତିଛନ୍ତି । ଆପଣ ଆଦେଶ ଜାରି କରନ୍ତୁ କାଲିଠୁଁ ଆଉ କେହି ନାଚଗୀତ ଦୂରେ ଥାଉ ହସି ବି ପାରିବେ

ନାହିଁ । ଯେ ଏ ଆଦେଶ ଅମାନ୍ୟ କରିବ ତାକୁ କଠିନ ଦଣ୍ଡ ଦିଆଯିବ । ଆଦେଶ ଜାରି ହୋଇଗଲା ପରେ ପ୍ରଜାମାନେ ଆହୁରି ଭୟଭୀତ ହୋଇପଡ଼ିଲେ । ହସିବା ଅପରାଧରେ କିଛି ଲୋକଙ୍କୁ କଠିନ ଦଣ୍ଡ ମଧ ଦିଆଗଲା । ସେକଥା ଶୁଣିଲାପରେ ଅନ୍ୟ କେଉଁଠି ଦୂରେ ଥାଉ ନିଜ ଲୋକଙ୍କ ଆଗରେ ବି ହସିବାକୁ ଲୋକେ ଭୟ କଲେ । ସମସ୍ତଙ୍କ ମୁହଁରୁ ହସ ଉଭେଇ ଗଲା । ଲୋକେ ଆସ୍ତେ ଆସ୍ତେ ଗମ୍ଭୀର ରାଗୀ ସଂଦେହୀ ହୋଇଗଲେ । ଦେଶରେ ଶତୃତା ଅବିଶ୍ୱାସ ମାଉପିଟ ବଢ଼ିଲା । କିଛି କାଳ ପରେ ଲୋକେ ହସିବା କଥାଟା ପୂରାପୂରି ଭୁଲିଗଲେ । ରାଜ୍ୟରୁ ହସ ନିଶ୍ଚିହ୍ନ ହୋଇଗଲା ।

ତାଙ୍କ ଅନ୍ତେ ତାଙ୍କ ପୁଅ ରାଜା ହେଲେ । ବାପାଙ୍କ ହୁକୁମକୁ ସେ ଆହୁରି କଡ଼ାକଡ଼ି କରିଦେଲେ । ପ୍ରଜାମାନଙ୍କର ରାଗ ହିଂସା ଶତୃତା ଭୟ ଆହୁରି ବଢ଼ିଲା । ତାଙ୍କ ପରେ ତାଙ୍କ ପୁଅ ରାଜା ହେଲେ । ତାଙ୍କର ବାହାଘର କଥା ଉଠିଲା । ରାଜା ଚରଠୁ ଶୁଣିଲେ ଦକ୍ଷିଣ ଦେଶର ରାଜା ଝିଅ ଭାରି ସୁନ୍ଦରୀ । ସେ ଦେଶ ରାଜାଙ୍କୁ ନିର୍ଦ୍ଦେଶ ଗଲା ରାଜକୁମାରୀଙ୍କୁ ଆଣି ଆମ ସୀମାନ୍ତରେ ଆମକୁ ଦେଇଯାଅ ନ ହେଲେ ଯୁଦ୍ଧ ପାଇଁ ତିଆରି ହୁଅ । ଛୋଟ ରାଜ୍ୟ । ଯୁଦ୍ଧ ଭୟରେ ରାଜକୁମାରୀଙ୍କୁ ଆଣି ଦେଇଗଲେ । ରାଜାଙ୍କର ତାଙ୍କ ସହ ଭାରି ଗମ୍ଭୀରତା ଭିତରେ ବାହାଘର ହୋଇଗଲା । ରାଜକୁମାରୀ ପ୍ରଥମେ ପ୍ରଥମେ ଭାରି କନ୍ଦାକଟା କରୁଥିଲେ । ଆସ୍ତେ ଆସ୍ତେ ସହିଗଲେ । କ୍ରମଶଃ ସେ ଦେଖିଲେ ରାଜ୍ୟଯାକ ସମସ୍ତେ ଭାରି ଗମ୍ଭୀର । କାହାରି ମୁହଁରେ ହସ ନାହିଁ । ତାଙ୍କ ଭିତରେ ରହି ସେ ବି ଆସ୍ତେ ଆସ୍ତେ ଗମ୍ଭୀର ହୋଇଗଲେ ।

ରାଜାଙ୍କର ବହୁତ ଚିନ୍ତା - ଶତ୍ରୁ ଭୟ - ରାଜ୍ୟରେ ଗଣ୍ଡଗୋଳ । ଚିନ୍ତା କରି କରି ସେ ରୋଗରେ ପଡ଼ିଗଲେ । ରାଜବୈଦ୍ୟମାନେ ଯେତେ ଚିକିତ୍ସା କଲେ ବି କିଛି ହେଲା ନାହିଁ । ଏଇ ସମୟରେ ଶୁଣାଗଲା ଦି ଜଣ ଭାରି ଅମୃତ-ହସ୍ତା ବିଦେଶୀ ବୈଦ୍ୟ ରାଜ୍ୟକୁ ଆସିଛନ୍ତି ବନ୍ଧୁ ସଂଖୋଳିବାକୁ । ତାଙ୍କୁ ଡ଼ାକରା ପଡ଼ିଲା । ସେମାନେ ଆସି ସବୁ ଦେଖିଶୁଣି ଔଷଦ ତିଆରି କରିଦେଲେ । କହିଲେ - ଏଇ ଔଷଦରେ ଛାମୁ ପୂରାପୂରି ଭଲ ହୋଇଯିବେ । କିନ୍ତୁ ଯାକୁ ହସ ଅନୁପାନରେ ଖାଇବାକୁ ହେବ । ଖାଇବା ଆଗରୁ ପାଂଚଥର । ଖାଇବା ପରେ ପାଂଚଥର । ନ ହେଲେ ଏ ଔଷଦ କାମ ଦେବ ନାହିଁ । ହସ କଣ ରାଜା ଜାଣି ନ ଥିଲେ । ତାଙ୍କ ଜେଜେବାପାଙ୍କ ଅମଳରୁ ତ ଦେଶରୁ ହସ ଉଠିଗଲାଣି । ସେ ବା ଜାଣନ୍ତେ କେମିତି ? ସେ ସଭାସଦ୍‌ମାନଙ୍କ ଆଡ଼କୁ ଚାହିଁଲେ । ସେମାନଙ୍କର ବି ତ ସମଦଶା । ସେମାନେ ଚୁପ୍‌ଚାପ୍ ହୋଇ ମୁଣ୍ଡ ପୋତିଲେ । କିନ୍ତୁ ରାଜା ତାଙ୍କର ଅଜ୍ଞତାକୁ ବିଦେଶୀମାନଙ୍କୁ ଜଣେଇବାକୁ ଚାହିଁଲେ ନାହିଁ । କହିଲେ - ହଉ ।

ବିଦେଶୀମାନେ ଫେରିଗଲେ । ରାଜାଙ୍କର ଲାଗି ଚିନ୍ତା ହେଲା ଔଷଦ କେମିତି ଖାଇବେ । ତିନିଦିନ ପରେ ରାଣୀ ଔଷଦ ଧରି ଆସି କହିଲେ - ଛାମୁଙ୍କର ଔଷଦ ଆରମ୍ଭ କରିବାର ଆଜି ଶୁଭଦିନ । ନିଅନ୍ତୁ । ଖାଆନ୍ତୁ । ରାଜା ତାଙ୍କୁ କିଛି ସମୟ ଚାହିଁଲେ । ତାପରେ ପଚାରିଲେ - ବୈଦ୍ୟ କହିଛନ୍ତି ହସ ଏ ଔଷଦର ଅନୁପାନ । ଔଷଦ ଖାଇବା ଆଗରୁ ପାଂଚଥର ଖାଇବା ପରେ ପାଂଚଥର । ନ ହେଲେ ଔଷଦ କାମ ଦେବ ନାହିଁ । ତମେ ଜାଣିଚ ସେ ହସ ଜିନିଷଟା କଣ - କେମିତି ତିଆରି ହୁଏ ସେ ହସ - କେମିତି ଲାଗେ ? ହସ ନ ହେଲେ ମୁଁ ଔଷଦ ଖାଇବି କେମିତି ? ଭାରି ଆଶ୍ଚର୍ଯ୍ୟ ହେଇଗଲେ ରାଣୀ - ରାଜା କଣ ତାଙ୍କୁ ଥଟ୍ଟା କରୁଚନ୍ତି ? ସତରେ ହସ କଣ ସେ ଜାଣନ୍ତି ନାହିଁ ? ଅବଶ୍ୟ ରାଜ୍ୟରେ କେହି ହସିବାର ସେ ଦେଖି ନ ଥିଲେ କି କେହି ତାଙ୍କୁ କହି ନ ଥିଲେ ଯେ ଦେଶରୁ ହସ ଅନେକ ଦିନ ହେବ ଉଠିଗଲାଣି । ସେ ଏଥର କଥାଟା କିଛି କିଛି ବୁଝି ପାରିଲେ । କହିଲେ - ହିଁ ଜାଣିଚି । ଦେଖିବେ ? ଦେଖନ୍ତୁ ।

ପ୍ରଥମେ ମୁରୁକି ମୁରୁକି ତାପରେ ସେ ହଠାତ୍ ହା ହା ଶବ୍ଦ କରି ହସି ଉଠିଲେ । ରାଜା ଭାରି ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲେ । ଯେ କଣ ? ରାଣୀ ଏମିତି ଶବ୍ଦ କରୁଚନ୍ତି କାହିଁକି ? କିନ୍ତୁ ଶବ୍ଦଟା ବେଶ୍ ଭଲ ଲାଗୁଚି ତ ଶୁଣିବାକୁ । ରାଣୀଙ୍କ ସୁନ୍ଦର ମୁହଁ ସୁନ୍ଦର ଦାନ୍ତ ତ ଆହୁରି ସୁନ୍ଦର ଦିଶୁଚି । ଏଇଟା କଣ ତାହେଲେ ହସ ? ସେ ରାଣୀଙ୍କୁ ଅନୁକରଣ କରି ହସିବାକୁ ଚେଷ୍ଟା କଲେ । ଓଠ ମେଲା କଲେ । ଦାନ୍ତ ଦେଖାଇଲେ । ଦି ଚାରିଥର ଭୁଲ କଲା ପରେ ସେ ବି ରାଣୀଙ୍କ ପରି ହସିବାକୁ ଆରମ୍ଭ କଲେ । ହଠାତ୍ ତାଙ୍କୁ କେମିତି ଗୋଟେ କଣ ଭାରି ଭଲ ଲାଗିଗଲା । ତାଙ୍କୁ କେବେ କିଛି ଏମିତି ଏତେ ଭଲ ଲାଗି ନ ଥିଲା । ସେ ଆହୁରି ଆହୁରି ଶବ୍ଦ କରି ହସିବାକୁ ଲାଗିଲେ । ବାହାହେଲା ପରେ ରାଣୀ ବି କେବେ ପ୍ରାୟ ହସି ନ ଥିଲେ । ତାଙ୍କୁ ବି ଭାରି ଭଲ ଲାଗିଲା । ସେ ବି ହସିବାରେ ଲାଗିଲେ । ଖବର ପାଇ ଉଆସଯାକର ଲୋକ, ମନ୍ତ୍ରୀ, ସଭାସଦ ଆଦି ସମସ୍ତେ ଆସି ପହଂଚି ଗଲେ ଆଉ ରାଜା ରାଣୀଙ୍କ ଦେଖାଦେଖି ହସିବାରେ

ଲାଗିଲେ । ରାଜା ଏଥର ବୁଝିପାରିଲେ ବୈଦ୍ୟମାନେ କାହିଁକି ତାଙ୍କୁ ହସ ଅନୁପାନରେ ଔଷଧ ଖାଇବାକୁ କହିଥିଲେ । ସେହିଦିନ ହସ ଉପରୁ ସବୁ କଟକଣା ଉଠିଗଲା । ଲୋକଙ୍କୁ ହସି ଶିଖେଇବା ପାଇଁ ଚରମାନେ ପବନ ବେଗରେ ରାଜ୍ୟଯାକ ଖେଳେଇ ହେଇଗଲେ । ଚରଙ୍କ ହସ ଦେଖି ରାଜ୍ୟ ଯାକର ସବୁଲୋକ ପୁଣି ହସିବାକୁ ଆରମ୍ଭ କଲେ । ସବୁଆଡ଼ ହସ ଖୁସି ନାଚଗୀତରେ ଭରିଗଲା । ସେମାନେ ଆସ୍ତେ ଆସ୍ତେ ସହଜ ହେଲେ । ପରସ୍ପର ଭିତରର ସଂଦେହ ରାଗରୋଷ ଅନେକ କମିଗଲା । ଦେଶରୁ ଶତ୍ରୁତା ହିଂସା ରୋଗବ୍ୟାଧି ବି ଅନେକ କମିଗଲା ।

କଥାଟା ମନଗଢ଼ା କାହାଣୀ ପରି ଲାଗୁଛି । ନା ? କିନ୍ତୁ କଥାଟା ସତ ବି ହେଇପାରେ । ଆପଣ ଆପଣଙ୍କ ଚାରିପଟକୁ ଟିକେ ଭଲ କରି ଚାହାଁନ୍ତୁ । ସେଇ କାହାଣୀ ରାଜ୍ୟର ଲୋକମାନଙ୍କୁ ଏବେ ବି ଆପଣ ଦେଖିପାରିବେ । ସେମାନେ ତ ଶେଷରେ ହସର ଅଭ୍ୟାସ ଫେରି ପାଇଲେ । କିନ୍ତୁ ଏମାନେ ? ଏମାନେ କେବେ ଫେରି ପାଇବେ ? ଆପଣ ନିଜ କଥା କହିଲେ - ଆପଣ କଣ ନିଜେ ହସିବା କଥା ମନେ ରଖିଛନ୍ତି - ଆପଣ ବି ତ ହସିବାକୁ ଏକଦମ ଭୁଲିଗଲେଣି - ଭୁଲିନାହାଁନ୍ତି - ତାହେଲେ କହିଲେ ଆପଣ ଆଜି କେତେଥର ହସିଚନ୍ତି - କାଲି କେତେଥର ହସିଥିଲେ - ଯଦି ହସିଥିଲେ କିଛି ସମୟ ଧରି ହସିଥିଲେ ନା ଖାଲି ଗୁଲ ଗୁଲ ହଉଥିଲେ - କାହା ସାଙ୍ଗରେ ମିଶି ହସିଥିଲେ ନା ଏକା ଏକା ହସିଥିଲେ - ମନଖୋଲି ହା ହା କରି ହସିଥିଲେ ନା -

ଏକଥା ପଢୁ ପଢୁ ଆପଣଙ୍କ ମୁହଁ ଗମ୍ଭୀର ହେଇଯିବଣି । ଆପଣ ଭାବିବେଣି କଣ ହେଲା ? ମୁଣ୍ଡରେ ମୁଣ୍ଡେ ଝଞ୍ଜାଳ । ମଣିଷ ପାଗଳ ହବାକୁ ବସିଲାଣି । ଏତେ ପାଠପଢ଼ି ପୁଅଟାର ଚାକିରୀ ନାହିଁ । ଝିଅ ବିଭାକର ଆଜି ଯାକେ ବାହାଘର ହେଇ ପାରୁ ନାହିଁ । ସ୍ତ୍ରୀଙ୍କର ଦେହ ଖରାପ - ଡ଼ାକ୍ତର କହୁଛନ୍ତି ଅନେକ ଟଙ୍କା ଲାଗିବ । ଅଫିସ୍‌ରେ ଚାରିଜଣ ମୋ ଉପରକୁ ଉଠି ଗଲେଣି । ତଳସାଇ ରଘୁ ଜେନା ପୁଅ କ୍ଷେତ୍ରା ଦାଦାଗିରି କରି ମୋ ଜମିରୁ ଅଧା ମାଡ଼ି ବସିଲାଣି । ବେପାରରେ ଦି ତିନି ବର୍ଷ ହେଲା ଘାଟା ଚାଲିଚି ଯେ ଚାଲିଚି ମୂଳ ବୁଡ଼ିବାକୁ ବସିଲାଣି । ରାଜନୀତିରେ ଏତେ ବଦମାସ ଗୁଣ୍ଡା ଜାଲିଆତ୍ ଆସି ପଶିଗଲେଣି ଯେ ଆଉ ଭଲରେ ରାଜନୀତି କରି ହେଉନାହିଁ । ହଜାରେ ସମସ୍ୟା । ମୁଁ ହସିବି ? ପୁଣି ତାର ହିସାବ ରଖିବି କେତେ ଥର ହସିଲି, ଦାନ୍ତ ଦେଖେଇ ହସିଲି ନା ନ ଦେଖେଇ ହସିଲି, ଏକା ଏକା ହସିଲି ନା ସାଇଯାକ ଲୋକଙ୍କୁ ମେଳ କରି ହସିଲି ? ବେକାର କଥା ସବୁ ! ଏତେ ଝଞ୍ଜାଳ ଭିତରେ ମୁଁ ଯଦି ବସି ହସିବି ଲୋକେ ମୋତେ କଣ କହିବେ ଜାଣିଚନ୍ତି ? ମୋତେ କହିବେ ଲୋକଟା ବେଲଜା ନ ହେଲେ ବୁଦ୍‌ବକ୍ । ଝଞ୍ଜାଳଗୁଡ଼ା ତାକୁ ଏମିତି ଫୁଲମାଳ ପରି ଲାଗୁଚି ଯେ ବସି ହୋ ହୋ ହେଇ ହସୁଚି । ହଉ ହେଲା ମୁଁ ମାନିଲି ମୁଁ ହସୁ ନାହିଁ । କହିଲେ ଆଉ କିଏ ହସୁଚି ? ରାଧୁଭାଇ, ମଦନଦାଦା, ନାରୁ ଜେଜେ, ମୁର୍ଗୀବାବୁ, ମିଷ୍ଟର ଖାନ୍ନା, ମିସେସ୍ ରାୟ, ଟ୍ରେଜେରୀ ଡ଼ାଇରେକ୍ଟର, ଫରେଷ୍ଟ ସେକ୍ରେଟେରୀ ଆମ ଏମ.ଏଲ.ଏ., ଶିକ୍ଷାମନ୍ତ୍ରୀ, ଚୈତନ ସାହୁ ଶୁଣ୍ଢି ଇତ୍ୟାଦି ଇତ୍ୟାଦି - ଏମାନେ କେହି ହସୁଚନ୍ତି କି ? ଜମା ହସୁନାହାଁନ୍ତି । ସମସ୍ତଙ୍କ ମୁହଁ ଗୁମ୍ । ଛିଡ଼ା ହେଇ କଥା ପଦେ କହିବାକୁ କାହାର ବେଳ ନାହିଁ । ଯଦିବା କେବେ କେମିତି ହସୁଚନ୍ତି ଯେମିତି ସେ ଟିକକ କୋଉଠୁ ମାଗି ଆଣିଥିଲେ ଚଟ୍ କରି ସରିଗଲା । କେହି ତ ହସୁ ନାହାଁନ୍ତି । ମୁଁ କଣ ଏକା ଏକା ବସି ହସିବି ? ଆଉ ତା ଛଡ଼ା ଘଡ଼ିଏ ବସି ହସାହସି କରିଦେଲେ କଣ ମୋର ସମସ୍ୟା ସବୁ ସମାଧାନ ହେଇଯିବ ? ଅତଏବ ଆପଣ ସେ ହସଫସ କଥା ଛାଡ଼ନ୍ତୁ । ସିରିୟସ କଥା ଯଦି କିଛି ଅଛି କୁହନ୍ତୁ । ନ ହେଲେ ଖସନ୍ତୁ । ମୁଁ ଭାରି ଝଞ୍ଜାଳରେ ଅଛି ! ମୋର ସମୟ ନାହିଁ ।

ଆପଣଙ୍କୁ ଲାଗିପାରେ ମୁଁ ମୋ କଥାକୁ ଠିକ୍ ପ୍ରମାଣ କରିବାକୁ ଆପଣଙ୍କ ମୁହଁରେ ମୋର ମନଗଢ଼ା କଥା କିଛି କୁହାଇ ଦେଉଛି । କିନ୍ତୁ ଆପଣ ଟିକେ ନିଜେ ଚିନ୍ତା କଲେ - ସତରେ କଣ ଏ ସବୁ ମୋର ମନଗଢ଼ା କଥା ?

ଜୀବନରେ ଏମିତି ବେଶ୍ କିଛି ଗୁରୁତର କଥା ଅଛି ଯାହା ଆମର ଦିହଘସା ହେଇଯାଇ ଭାରି ସାଧାରଣ ସାଧାରଣ ଲାଗେ । ପାଖରୁ ଭଲ କରି ନିରିଖେଇ ନ ଦେଖିଲେ ସେ କଥାର ଗୁରୁତ୍ୱ ଧରାପଡ଼େ ନାହିଁ । ଆମ ଜୀବନରୁ ହସ ଆସ୍ତେ ଆସ୍ତେ ଉଭେଇଯିବା ସେଇ ଭଳି ଏକ ଗୁରୁତର କଥା ।

କିନ୍ତୁ ଆମ ସମସ୍ତଙ୍କର ଜୀବନର ଲକ୍ଷ୍ୟ ତ ଗୋଟିଏ - ହସ ଖୁସି ଆନନ୍ଦ । ଆମେ ସମସ୍ତେ ଚାହୁଁ ହସ ଖୁସିରେ ଆମର ଜୀବନ କଟିଯାଉ । ଆମେ ଯେତେ ଯାହା କରୁଛୁ ସବୁର ତ ସେଇ ଗୋଟିଏ

ଲକ୍ଷ୍ୟ । କିନ୍ତୁ ଆମେ କରୁଚୁ କଣ ? ସେଇ ହସ ଖୁସିକୁ ଖୋଜିବାର ଚେଷ୍ଟାରେ ଆମେ ଅଣନିଶ୍ୱାସୀ ହୋଇ ଧାଉଁଛୁ । ଜଂଜାଳର ଯନ୍ତା ଭିତରେ ନିଜକୁ ବେଶି ବେଶି ବାନ୍ଧି ପକାଉଛୁ । ଚିନ୍ତା ଉଦ୍‌ବେଗ ଉତ୍କଣ୍ଠାର ନିବୁଜ କୁଠାରର ପାଟି ଭିତରେ ନିଜକୁ ବନ୍ଦୀ କରି ଦେଉଛୁ । ହସିବାକୁ ଆମକୁ ଭୟ ଲାଗୁଛି । ହସିବାର ଖୁସି ହେବାର ମାନସିକତା ଆମେ ହରେଇ ବସୁଛୁ । ଫଳରେ ଆମର ଦୁଃଖବୋଧ ବଢୁଛି । ରୋଗ ବଢୁଛି । ଅଶାନ୍ତି ବଢୁଛି । ଜୀବନ କ୍ରମଶଃ ଅଧିକରୁ ଅଧିକ ରସହୀନ, ରଙ୍ଗହୀନ ନୀତିହୀନ ଅସୁସ୍ଥ ଓ କୃତୀଳ ହୋଇଯାଉଛି ।

ଅବଶ୍ୟ ଜୀବନ ସୁଖ ଆଉ ଦୁଃଖର ଏକ ମିଶ୍ରିତ ଧାରା । ଏଭଳି ସମୟ ବା ଘଟନା ଆମ ଜୀବନରେ ଆସେ ଯେତେବେଳେ ହସି ହୁଏନା । ସେ ଦୁଃଖକୁ ପିଠେଇ ନେବାକୁ ପଡ଼େ । କିନ୍ତୁ ବାକିତକ ସମୟରେ ବା ଘଟନାରେ ଆମେ ମନ ଖୋଲି ହସି ପାରୁନାହୁଁ କାହିଁକି ? ମୁଁ ଯାହା କହିଛି ଆମେ ହସିବାକୁ ଭୁଲିଯାଉଛୁ । ହସିବାର ମାନସିକତା ହରେଇ ବସୁଚୁ । ଆମ ଜୀବନର ହିସାବ ଖାତାରେ ହସ ପାଇଁ ଯାଗା ନାହିଁ - ଅଥଚ ସେ ହିସାବ ଖାତାଟା ଖାଲି ହସରେହିଁ ଲେଖାଯିବ ବୋଲି ଆମେ ପ୍ରଥମରୁ ସ୍ଥିର କରିଥିଲେ !

ହସ ଯେ ମନରେ ଖାଲି ଖୁସି ଭାବ ଜାତ କରେ ତା ନୁହେଁ ହସିଲେ ଆମ ଜଂଜାଳର ବୋଝ ଆମକୁ ଟିକେ ହାଲୁକା ଲାଗେ । ଚିନ୍ତା ଉଦ୍‌ବେଗ ଉତ୍କଣ୍ଠା ନିରାନନ୍ଦର ଗଣ୍ଠି ଫିଟୁଲା ହେଇଯାଏ । ସମସ୍ୟାକୁ ସାମନା କରିବାକୁ ଏକ ବିଶ୍ୱାସର ଆତ୍ମ ବିଶ୍ୱାସର ମାନସିକତା ତିଆରି ହୁଏ । ହସିଲା ମୁହଁଟିଏ ପରିବେଶକୁ ମିଷ୍ଟ ମଧୁର ଆଉ ଶାନ୍ତ କରିଦିଏ । ଜୟ ବି କରିପାରେ । ହସିଲେ ଅସୁସ୍ଥତା କମେ । ଜୀର୍ଣ୍ଣଶକ୍ତି ବଢେ । ଗ୍ରନ୍ଥିମାନଙ୍କର ରସସ୍ରାବ ବଢେଇ ହୃତପିଣ୍ଡ ଆଉ ରକ୍ତଚାପକୁ ସନ୍ତୁଳିତ କରେ । ଭୟ ଦୁଃଖ ରୋଗଚିନ୍ତା ଉଦ୍‌ବେଗ ଦେହ ଆଉ ମନ ଉପରେ ଯୋଉ କଳଙ୍କି ବୋଳି ଦିଅନ୍ତି ତାକୁ ଧୋଇ ପୋଛି ସଫା କରିଦିଏ । ଜୀବନର ଦୃଷ୍ଟିଭଙ୍ଗୀ ବଦଳେ ଆଉ ଚରିତ୍ର ବି । ଜଣେ ଭାରି ପ୍ରତିଷ୍ଠିତ ବିଦେଶୀ ଡ଼ାକ୍ତର କହିଛନ୍ତି ଯେ ଯଦି ପୃଥିବୀରେ ଏକ ନିଛକ ଅବିମିଶ୍ର ହସଖୁସିଭାବ ଓ ପର୍ଯ୍ୟାପ୍ତ ହସ ଥାନ୍ତା ତେବେ ଅଧିକାଂଶ ଡ଼ାକ୍ତର, ଡ଼ାକ୍ତରଖାନା ଆଉ ସ୍ୱାସ୍ଥ୍ୟ ନିବାସ ଅଦରକାରୀ ହେଇଯାନ୍ତେ ।

ସେଥିପାଇଁ ହସକୁ ଆମ ଜୀବନର ପରିଧି ଭିତରକୁ ଫେରେଇ ଆଣିବାକୁ ହେବ । ଜୀବନର ଜାଲକୁ ବୁଣିବା ପାଇଁ ଜଂଜାଳର ସୂତା ସହ ହସର ସୂତାକୁ ମିଶେଇ ମିଶେଇ ବୁଣିବାକୁ ପଡ଼ିବ । ସୃଷ୍ଟିକର୍ତ୍ତା କେବଳ ଦୁଃଖର ବୋଝଟିଏ ଦେଇ ଆମକୁ ପଠେଇ ନାହାଁନ୍ତି । ଆମ ଭିତରେ ହସଖୁସିର ଗୋଟିଏ ଅକ୍ଷୟ ଭଣ୍ଡାର ବି ସଜାଡ଼ି ରଖି ଦେଇଚନ୍ତି । କିନ୍ତୁ ଆମେ ଆମ ନିଜ ହାତରେ ପଥର ବନ୍ଧମାନ ତିଆରି କରି ସେ ଭଣ୍ଡାରର ଦ୍ୱାରକୁ ରୁଦ୍ଧ କରିଦେଇଛୁଁ । ଆପଣ ସେ ଅକ୍ଷୟ ଭଣ୍ଡାରର ଦ୍ୱାର ଖୋଲି ଦିଅନ୍ତୁ । ଆଉ ତା ଭିତରୁ ଯେତେ ନେଇପାରିବେ ସେତେ ହସ ଖୁସିର ଧନ ନେଇ ଚାଲନ୍ତୁ । ଆଜି । କାଲି । ପରଦିନ । ସବୁଦିନ । ସେ ଭଣ୍ଡାର ଅକ୍ଷୟ । ଯେତେ ନେଲେ ବି ସରିବ ନାହିଁ । ଜୀବନକୁ ଯଦି ମୁହୂର୍ତ୍ତମାନଙ୍କର ସମଷ୍ଟି ବୋଲି ଧରାଯାଏ ତେବେ ଜୀବନର ଯେତେ ବେଶି ମୁହୂର୍ତ୍ତ ହସ ଖୁସିର ଧନରେ ଭରି ଦେଇ ପାରିବେ ଜୀବନ ସେତିକି ସୁନ୍ଦର ହେବ । ମଧୁର ହେବ ।

ସେଥିପାଇଁ ପୁଣି ଥରେ କହୁଚି ଆପଣ ହସନ୍ତୁ । ଅନ୍ୟମାନଙ୍କୁ ହସାନ୍ତୁ । ହସ ଗପ କହନ୍ତୁ । ହସ ଗୀତ ଗାଆନ୍ତୁ । ହସ ନାଟକ କରନ୍ତୁ । ହସ ନାଟକ ଦେଖନ୍ତୁ । ହସ ବହି ପଢନ୍ତୁ । ଲେଖକମାନଙ୍କୁ ହସ ବହି ଲେଖିବାକୁ କହନ୍ତୁ । (ଓଡ଼ିଶାରେ ହସ ଲେଖା ଏତେ କମ୍ ଯେ ମନେ ହେଉଚି ଓଡ଼ିଶାର ଲୋକେ ହୁଏତ ସେ କାହାଣୀ ରାଜ୍ୟର ଲୋକଙ୍କ ପରି ହସିବାକୁ ଭୁଲିଗଲେଣି) ନିଜେ ହସି ହସି ଗଡ଼ନ୍ତୁ । ଅନ୍ୟମାନଙ୍କୁ ହସେଇ ହସେଇ ଗଡ଼ାନ୍ତୁ । ହସଟା ଗୋଟ ଭାରି ସଂକ୍ରାମକ ଜିନିଷ । ଆପଣ ହସିଲେ ଅନ୍ୟମାନଙ୍କ ପାଖକୁ ବି ସେ ହସ ଖେଳିଯିବ । ଦୀପରୁ ଦୀପଟିଏ ଜଳିଲା ପରି ହସରୁ ହସଟିଏ ଖୁସିରୁ ଖୁସିଟିଏ ବାହାରିବ । ସେ ଛୋଟ ଛୋଟ ଲହରୀମାନ ମିଶି ମିଶି ବଡ଼ ବଡ଼ ଲହରୀ ହୋଇଯିବେ ଓ ସବୁଆଡ଼କୁ ଚହଟିଯିବେ । ଆଉ ଜୀବନକୁ ଆନନ୍ଦ ଜଳରେ ଭିଜେଇ ଭିଜେଇ ତା ଉପରେ ରସ ରଙ୍ଗ ଆଉ ଛନ୍ଦର ଗୋଟିଏ ସୁନ୍ଦର ବହଳ ତୂଆ ପୁଟ ବୋଳି ଦେବେ ।

ଏଥର ଆପଣଙ୍କୁ ଆମନ୍ତ୍ରଣ କରୁଛି ଏ ସଂକଳନର ନାଟକଗୁଡ଼ିକୁ ପଢିବାକୁ । ଆଶା କରୁଛି ନାଟକଗୁଡ଼ିକ ଆପଣଙ୍କୁ ଭଲ ଲାଗିବ - ହସିବା ପାଇଁ, ଖୁସିହବା ପାଇଁ ବେଶ୍ କିଛି ଉପାଦାନ ଯୋଗାଇ ଦେବ ।

ବିନୀତ
ଲେଖକ

# - ଚରିତ୍ର ଲିପି -

ବୀରେଶ୍ୱର - ଉଚ୍ଚଶିକ୍ଷିତ । ସ୍ୱଚ୍ଛଳ ସ୍ୱାସ୍ଥ୍ୟବାନ ଓ ସୁନ୍ଦର । ଗମ୍ଭୀର ପ୍ରକୃତି । କିଛିଟା ମୁରବିୟାନା ଢଙ୍ଗ । ଅବିବାହିତ । ପ୍ରେମ କରୁଥିଲେ । କିଛି ହତାଶା ହୋଇଛି । ଘରଭଡା ଛଡା ଆୟର ଅନ୍ୟ ପନ୍ଥା ବି ଅଛି । ବୟସ ୩୨- ୩୩ ।

ଶଙ୍ଖ ସାହୁ - ଉଚ୍ଚଶିକ୍ଷିତ ଯୁବକ । ସୁନ୍ଦର । ଅବିବାହିତ । ଭଲ କର୍ମ ସଂସ୍ଥାନ ଅଛି । ଶୀଲାକୁ ପ୍ରେମ କରି ବସିଛି । ବୀରେଶ୍ୱରଙ୍କ ଭଡା ଘରେ ରହେ ।

ନାରୁ ଷଡ଼ଙ୍ଗୀ - ଉଚ୍ଚଶିକ୍ଷିତ ସୁନ୍ଦର ଉତ୍ତମ ସ୍ୱାସ୍ଥ୍ୟର ଯୁବକ । ବକ୍ସିଂ ଆଦି କରେ । ଅବିବାହିତ । ଚିନ୍ତାରେ କିଛିଟା ସ୍ଥୁଳ । ଭଲ ଚାକିରୀ । ଶଙ୍ଖ ସାହୁ ପରି ସେ ମଧ୍ୟ ଶୀଲାକୁ ପ୍ରେମ କରେ । ବୀରେଶ୍ୱରଙ୍କ ଘରେ ଭଡାରେ ରହେ ।

ରତ୍ନାକର - ବୀରେଶ୍ୱରଙ୍କ ଚାକର । ଚତୁର । କିଛି ଶିକ୍ଷା ଅଛି । ବୟସ ୩୦-୩୧ ।

ଶୀଲା - ଉଚ୍ଚଶିକ୍ଷିତା ସୁନ୍ଦରୀ ଯୁବତୀ । ଚତୁର ସ୍ୱଭାବ । ଭଲ କର୍ମସଂସ୍ଥାନ ଅଛି । ଅବିବାହିତ । ବୀରେଶ୍ୱରଙ୍କ ଘରେ ଭଡାରେ ରହେ ।

--- ୦ ---

(ଶଙ୍ଖ ସାହୁର ବେଡ୍‌ରୁମ୍ । ରୁମ୍‌ରେ ଉପଯୋଗୀ ଓ ରୁଚିବନ୍ତ ଆସବାବ ପତ୍ର । କାଛ କପ୍‌ବୋର୍ଡ଼ରେ ରଙ୍ଗୀନ୍ ଟିଭି ରେଡ଼ିଓ ମ୍ୟୁଜିକ୍ ସିଷ୍ଟମ୍ । ବହିପତ୍ର । ଗୋଟିଏ ହାୱାଇୟାନ୍ ଗିଟାର । ରୁମ୍‌ରେ ସୁନ୍ଦର ଚାପା ଖୁସ୍‌ବୁଟିଏ ବାହାରୁଛି । ଶଙ୍ଖ ସାହୁ ଖଟରେ ଶୋଇଛି । ତାର ଗୋଡ଼ଗଣ୍ଠି ଜଖମ୍ । ସେ ଗଣ୍ଠିକୁ ଚିପି ଚିପି ପରୀକ୍ଷା କରୁଛନ୍ତି ବୀରେଶ୍ୱର । ସମୟ ସକାଳ ।)

ଶଙ୍ଖ- (କଷ୍ଟ ହେଉଛି) ହଁ... ହଁ... ହଁ... ସାର୍ ସେଇଠି ସେଇଠି- ସେଇ ଯାଗାଟା ଭାରି କଷ୍ଟ ହଉଚି । ଓଃ... ଓଃ...

ବୀରେ- ଆଚ୍ଛା ଆଚ୍ଛା ତା'ହେଲେ ଏଇ ବଳାଗଣ୍ଠିଟା ଜଖମ୍ ହେଇଚି । ନାଇଁ ?

ଶଙ୍ଖ- ହଁ ସାର୍, ସେଇ ବଳାଗଣ୍ଠିଟା । ଖାଲି ତ ବିନ୍ଧି ଫାଟିଯାଉଚି- ବିନ୍ଧି ଫାଟି ଯାଉଚି । ଓଃ... ଓଃ...

ବୀରେ- ଚିକିତ୍ସା ?

ଶଙ୍ଖ- ଚାଲିଚି ସାର୍ ଡାକ୍ତର ମଲମ ଦେଇଛନ୍ତି । ବଟିକା ବି ଦେଇଛନ୍ତି ।

ବୀରେ- I see- I see- କାରଣ ?

ଶଙ୍ଖ- ଡାକ୍ତର ତ ସାର୍ କାରଣ କହି ନାହାନ୍ତି ।

ବୀରେ- ଆପଣଙ୍କ ଗୋଡ଼ ଗଣ୍ଠି ଜଖମ୍ ହେଲେ ଡାକ୍ତର ତାର କାରଣ କହିବେ ?

ଶଙ୍ଖ- ହେଁଃ ହେଁଃ ସାର୍, ମୁଁ ଭାବିଲି-

ବୀରେ- No ଭାବନା- only ଘଟଣା । କେମିତି ଘଟିଲା ?

ଶଙ୍ଖ- ଗୋଡ଼ିଫୋଡ଼ି ଥିଲା କି କଣ ତା ଉପରେ ଯେମିତି ଗୋଡ ପଡି ଯାଇଛି ଏତେ ଜୋର୍‌ରେ ମୋଡ଼ି ହେଇଗଲା ଯେ-

ବୀରେ- I see- କିନ୍ତୁ ଶଙ୍ଖବାବୁ ଏ ଦୈବୀ ଦୁର୍ଘଟଣାଟି ଘଟିଲା କୋଉଠି ?

ଶଙ୍ଖ- ନାରୁବାବୁଙ୍କ ରୁମ୍ ପଛପଟ ଦେଇ ଯୋଉ ବାରଣ୍ଡା ଯାଇଚି ସେଇ ବାରଣ୍ଡାର ପାହାଚରେ ଚଢୁ ଚଢୁ-

ବୀରେ- ସେ ବାରଣ୍ଡା ତ ଶୀଳା ଦେବୀଙ୍କ ରୁମ୍ ଆଡ଼କୁ ଯାଇଚି ।

ଶଙ୍ଖ- ଯାଇଚି ଯେ ସାର୍ ମୁଁ ତାଙ୍କ ରୁମ୍‌କୁ ଯାଉ ନ ଥିଲି ।

ବୀରେ- ତା'ହେଲେ ସେ ବାରଣ୍ଡାରେ ଚଢି ଆଉ କୁଆଡ଼େ ଯାଇଥାନ୍ତେ ? ସେ ବାରଣ୍ଡା ତ ଅନ୍ୟ କୁଆଡେ ଯାଏ ନାହିଁ । ଶଙ୍ଖବାବୁ ! ଆପଣଙ୍କ ପାଦମାନେ ଆପଣଙ୍କ ବିନା ଅନୁମତିରେ କୁଆଡେ ଯାଇପାରନ୍ତି କି ? ହୁଁଃ ! ଶଙ୍ଖବାବୁ ! ବୟସ ?

ଶଙ୍ଖ- ଛବିଶ ।

ବୀରେ- ପାଠ ?

ଶଙ୍ଖ- କଷ୍ଟିଂରେ ଡିଗ୍ରୀ ।

ବୀରେ- ଦରମା ?

ଶଙ୍ଖ- ଏଗାର ହଜାର ।

ବୀରେ- ବାହାଘର ?

ଶଙ୍ଖ- ହେଇ ନାହିଁ ।

ବୀରେ- ଇଚ୍ଛା ଅଛି ?

ଶଙ୍ଖ- ହେଁଃ... ହେଁଃ... ହେଁଃ... ନାଇଁ ମାନେ ସମସ୍ତେ ହୁଅନ୍ତି ତ-

ବୀରେ- ସମସ୍ତେ ହୁଅନ୍ତି ବୋଲି ଆପଣ ବି ହେବେ ? କାହିଁ ମୁଁ ତ ଆଜିଯାକେ ହେଇ ନାହିଁ କି ହବାକୁ ଇଚ୍ଛା ବି କରୁନାହିଁ । ମୋର କିଛି ଅସୁବିଧା ହଉଚି କି ? ତା ହେଲେ ? ମାୟା ବୁଝିଲେ ଶଙ୍ଖବାବୁ ସବୁ ମାୟା । ସବୁ ମାୟା ମଚ୍ଛିନ୍ଦରକା ଖେଲ । ଆପଣଙ୍କର ଯୁବକ ବୟସ ସୁନ୍ଦର ଚେହେରା ଉଚ୍ଚ ଶିକ୍ଷା ମୋଟା ଦରମା- ଏ ସବୁ କିନ୍ତୁ ଭାରି ବିପଜ୍ଜନକ । ଆଚ୍ଛା ଶଙ୍ଖବାବୁ ! ପଦ୍ମ ପତ୍ରରେ ନୀର ଜହଇ ମନ ଆରେ ପିଙ୍ଗଳା ବେଶ୍ୟା ଭସ୍ମୀଭୂତସ୍ୟ ଶରୀରସ୍ୟ କଠାକୁହୁରି ଡାଇମା କାଃ ତବ କାନ୍ତା ଶିବ ଉବାଚ ଲମ୍ପା ଚୁଟୀ- ଏ ସବୁ କିଛି ଭଲ ଲାଗେ ?

ଶଙ୍ଖ- (ବୁଝି ନ ପାରି) ଏ ସବୁ କଥା-

ବୀରେ- ବୁଝି ପାରିଲେ ନାହିଁ ? ଆଚ୍ଛା ଗଙ୍ଗଶିଉଳୀ ଜହ୍ନ ରାତି ଝୁମୁରୁ ଝୁମୁ ଚାବିନେନ୍ତା ବେପଥୁ କମ୍ପ ଚିରା ପୋଟଳ ଚେଡି ଚତୁରୀ ଚାହିଁଲା ମହୁଲୀ ନିଦ ଯୋଡି ଯାଉଁଛି- ଏସବୁ କିଛି ଭଲ ଲାଗେ ?

ଶଙ୍ଖ- (ବୁଝି ନ ପାରି) ଆଜ୍ଞା ଏ ସବୁ କଥା ବି ତ...

ବୀରେ- ଲାଗେ ଲାଗେ ଶଙ୍ଖବାବୁ ଯୁବକ ବୟସ ହେଲେ ନିଶ୍ଚେ ଲାଗେ । ଯାହା କହିଲି ଯେ ହେଲା ମାୟା ମଛିନ୍ଦରକା ଖେଲ୍ । ଥରେ ଯଦି ମାଡି ବସିଲା ନା ତା ହେଲେ ମୁଣ୍ଡକୁ ଏକଦମ୍ ମଦନିଶା ପରି ଝାଙ୍କି ଦବ । ଚାରିଆଡ ଖାଲି ଝିଲିମିଲି ଝିଲିମିଲି ଦିଶିବ । ଭାରି ବଜ୍ଜାରି ଜିନିଷ- ଆପଣ କଣ କରିବେ ? ଆଚ୍ଛା ଶଙ୍ଖବାବୁ ଆପଣଙ୍କ ଗୋଡ଼ ଆଗରୁ କେବେ ଏମିତି ଖସିଥିଲା ?

ଶଙ୍ଖ- ଆଗରୁ ? (ମନେ ପକାଇବାର ଚେଷ୍ଟା କରି) ଆଗରୁ- ଆଗରୁ- ହଁ ଆଗରୁ ଥରେ ଖସିଥିଲା । ମୋତେ ସେତେବେଳେ ବାର କି ତେର ବର୍ଷ । ମାମୁଁଙ୍କ ପୁରୁଣା ଘର ବାରଣ୍ଡାରେ-

ବୀରେ- (ମଝିରେ) Juvenile- ବାଳ ସୁଲଭ । ହିସାବରେ ଯାଏ ନାହିଁ । କିନ୍ତୁ ଏ ବୟସରେ ଖସିବାଟା ଭାରି ବିପଜ୍ଜନକ । କାହିଁକି ଜାଣନ୍ତି ?

ରତ୍ନା- (ଆସିଛି) ସାର୍ ! ଆପଣ କୋଉ ଶାଢୀ ପିନ୍ଧା ମେଳାକୁ ଜଜ୍ ହେଇ ଯିବାର ଥିଲା କି ?

ବୀରେ- କଣ ହେଲା ? ମୁଁ କୋଉ ଶାଢୀ ପିନ୍ଧା ମେଳାକୁ ଜଜ୍ ହେଇ ଯିବାର ଥିଲା କି ? ମୋ ସାଙ୍ଗରେ ଥଟ୍ଟା ହଉଚୁ ?

ରତ୍ନା- ସାର୍ ମୁଁ କଣ କିଛି କହିଚି ? ଜଣେ ସ୍ତ୍ରୀଲୋକ କହିଲେ ।

ବୀରେ- କିଏ ସେ ସ୍ତ୍ରୀଲୋକ ?

ରତ୍ନା- ସେ କଥା କଣ ସେ ମୋତେ କହିଛନ୍ତି ? ସେ ମୋତେ କହିଲେ ସାର୍ ପରା ଆମ ଶାଢୀପିନ୍ଧା ମେଳାକୁ ଆସିବା କଥା । ଆମେ ଚାହିଁ ବସିଚୁଁ । ସେ ଏତେବେଳଯାଏ ଗଲେ କୁଆଡ଼େ ? ଆଚ୍ଛା ଏଟା ସୁରେଶ୍ୱର ବାବୁଙ୍କ ଘର ତ ? ମୁଁ ଯେମିତି ଆପଣଙ୍କ ନାଁ କହି ଦେଇଚି ଧେତ୍‌ତେରି ପୁଣି ଆଉ ଗୋଟେ ଭୁଲ୍ ନମ୍ବର ବୋଲି ଧଡ୍ କରି ଫୋନ୍‌ଟା ଥୋଇ ଦେଲେ । ନାଁ ପଚାରିଥାନ୍ତି ଆଉ କେତେବେଳେ ?

ବୀରେ- କିଛି ଦରକାର ନାହିଁ । ସେ ଗୋଟେ ବାଜେ ଭୁଲ୍ ନମ୍ବର ସ୍ତ୍ରୀଲୋକ । ତୁ ଯା । (ରତ୍ନାକର ଚାଲିଗଲା) ବାହା ନ ହେଇ ଶାଢି ମେଳାରେ ଜଜ୍ ! ହୁଁ ! ହଁ- ଶଙ୍ଖବାବୁ ! ମୁଁ ଆପଣଙ୍କୁ କଣ ଗୋଟେ କହୁଥିଲି-

ଶଙ୍ଖ- ହଁ ସାର୍ ଆପଣ କଣ ଗୋଟେ ବିପଜ୍ଜନକ କଥା କହୁଥିଲେ ।

ବୀରେ- ହଁ ହଁ- ବିପଜ୍ଜନକ କଥା । ସେ କଥାଟା ହେଲା ଗୋଟିଏ ପାଦ ଖସିଲେ ଭାରି କଷ୍ଟ ହୁଏ । କିନ୍ତୁ ଦୁଇଟିଯାକ ପାଦ ଖସିଗଲେ ଭାରି ମଜା ଲାଗେ । ବାଇଶ ବର୍ଷ ବେଳେ ଏମିତିକା ପାହାଚରେ ଚଢୁ ଚଢୁ ଯେତେବେଳେ ମୋର ଗୋଟେ ପାଦ ଖସିଗଲା ସେତେବେଳେ ମୋତେ ଭାରି କଷ୍ଟ ହେଲା । ମୁଁ ଛୋଟେଇ ଛୋଟେଇ ଚାଲିଲି । କିନ୍ତୁ ସତେଇଶ ବର୍ଷ ବେଳେ ଯେତେବେଳେ ମୋର ଦୁଇଟା ଯାକ ପାଦ ଖସିଗଲା ସେତେବେଳେ କଣ ହେଲା ଜାଣଚି ? ମୁଁ ମହା ଆନନ୍ଦରେ ଚାରିଆଡ଼େ ଡେଇଁ ଡେଇଁ ବୁଲିଲି ।

ଶଙ୍ଖ- (ବୁଝି ନପାରି) ଆଜ୍ଞା ଗୋଟେ ପାଦ ଖସିଯିବାରୁ ଆପଣ ଛୋଟେଇ ଛୋଟେଇ ଚାଲିଲେ- କିନ୍ତୁ ଦି'ଟାଯାକ ପାଦ ଖସିଯିବାରୁ-

ବୀରେ- (ମଝିରେ) କିନ୍ତୁ ମାତ୍ର ଦଶ ମାସ- Only ten months-

ଶଙ୍ଖ- କଣ ସାର୍- ଡିଆଁ ଡେଇଁ ?

ବୀରେ- ତାପରେ ଦିନେ ହଠାତ୍ ସବୁ ଡିଆଁ ଡେଇଁ ବନ୍ଦ ହେଇଗଲା । ସେଇ ଦିନୁ ମୁଁ ମୋ ପାଦମାନଙ୍କୁ ହରଦମ୍ ଜଗିଛି । ଟିକେ ଖସିବା ମତଲବ ଦେଖିଲେ ସାଙ୍ଗେ ସାଙ୍ଗେ ଜବତ୍ । ସେଇଥିପାଇଁ ବତିଶ ବର୍ଷରେ ବି no ସମସ୍ୟା । ଆଉ ସେଇଥିପାଇଁ ଆପଣଙ୍କୁ କହୁଚି ଆପଣ ବି ଭାରି ହୁସିଆର୍ ହୁଅନ୍ତୁ । ପାହାଚଗୁଡ଼ା ଭାରି ବଜ୍ଜାତ୍ ଜିନିଷ । ଟିକେ ବେହୁସିଆର ହେଇଗଲେ ଆପଣଙ୍କୁ ଏମିତି ମଜାରେ ଟାଣି ନେଇଯିବେ ଯେ ଆପଣ କିଛି ଜାଣିବା ପୂର୍ବରୁ ଦେଖିବେ

ଯେ ଆପଣ ଗୋଟେ ଭୁଲ୍ ଠିକଣାରେ ପହଞ୍ଚି ଯାଇଛନ୍ତି । ଆଉ ଆପଣଙ୍କ ଭାଗ୍ୟ ଯଦି ମନ୍ଦ ଥାଏ ତାହେଲେ ଦେଖିବେ ତା ଭିତରେ ଗୋଟେ ବିପଜ୍ଜନକଭାବେ ସୁନ୍ଦରୀ ଯୁବତୀ ବସି ଶାଢ଼ି ମେଳା କରୁଚି ଆଉ ଭୁଲ୍ ନମ୍ବରମାନଙ୍କୁ ଟେଲିଫୋନ କରୁଚି । ସେ ଆପଣଙ୍କୁ ଏମିତି ମଜାରେ ତା ଶାଢ଼ିର ବାସ୍ନା ସୁଂଘେଇ ଦବ ଯେ ଆପଣ ଗୋଟେ ମେଣ୍ଢା ହେଇଯିବେ । ଆଚ୍ଛା ମିଷ୍ଟର ଶଙ୍ଖ ! ଆପଣ କବିତା ଫବିତା କିଛି ଲେଖନ୍ତି ?

ଶଙ୍ଖ- ନାଇଁ ସାର୍ ଲେଖେ ନାହିଁ ।

ବୀରେ- Good- କେବେ ଲେଖିବେ ନାହିଁ । ମୋର ଗୋଟେ କଲେଜ ସାଙ୍ଗର କଣ ହେଲା କେଜାଣି ସେ ଦିନରାତି ବସି ଖାଲି କବିତା ଲେଖିଲା । ସବୁବେଳେ ଗୋଟେ ନୋଟ ବହି ଧରିଥିବ । ମଝିରେ ମଝିରେ ଗୁମ୍ ହେଇ ବସିଯିବ । ତାପରେ ସେଥିରେ କଣ ସବୁ ଲେଖି ପକେଇବ ମଝିରେ ମଝିରେ ଆକାଶର ଆଖି ଚନ୍ଦ୍ରମାର ଚକ୍ର ବାସୀ ବାସୀ ଜହ୍ନ ନୀଳ ନୀଳ ଶୂନ୍ୟତା ସରମୀ ଜୋଛନା ଅଲଗା ଅଲଗା ପୃଥିବୀ ଇତ୍ୟାଦି ଇତ୍ୟାଦି କଣ ସବୁ ଉଦ୍‌ଭଟ କଥାସବୁ କହୁଥିଲା । ଏବେ ଦେଖୁଚି ଗୋଟେ ଲମ୍ବଦାଢ଼ୀ ଝୁଲେଇ ଫଟା ପଞ୍ଜାବୀ ପିନ୍ଧି ରାସ୍ତାରେ ବୁଲୁଚି । ଗଞ୍ଜେଇ ଖାଉଚି । ଯେ ସବୁ କଣ ଜାଣନ୍ତି ? ଯେ ସବୁ ସେଇ ପାଦ ଖସିବାର ଲକ୍ଷଣ ! ଆପଣ ଅବଶ୍ୟ କବିତା ଫବିତା ଲେଖୁନାହାନ୍ତି । ଭଲ ହେଇଚି । ତଥାପି ହୁସିଆର୍ ଥିବେ- ମୁଁ ପିଲାଦିନେ ସ୍କୁଲରେ ପଢ଼ିବାବେଳେ ଛୁଟି ହେଲେ ବସ୍‌ରେ ଗାଁକୁ ଯାଉଥିଲି । ସେ ବସ୍‌ର ଟିକେଟ ପଛରେ ଲେଖାହୋଇଥିଲା ନିଜ ମାଲ୍ ନିଜ ହୁସିଆରରେ ରଖନ୍ତୁ । ଦୈବୀ ଦୁର୍ଘଟଣାକୁ କମ୍ପାନୀ ଦାୟୀ ନୁହେଁ । ଆପଣଙ୍କର ବି ସେମିତି ଗୋଟେ ଦୈବୀ ଦୁର୍ଘଟଣା ହେଇଗଲେ କମ୍ପାନୀ ଦାୟୀ ହବ ନାହିଁ । (ହସି ହସି ଚାଲିଗଲେ) ।

ଶଙ୍ଖ- ନାରୁ ବାବୁ ! ଆଉ କାହିଁକି ସେମିତି କବାଟ ଫାଙ୍କରେ ଛପି ଛିଡ଼ା ହେଇଚ ? ଏଥର ପ୍ରକାଶିତ ହୁଅ । (ହସିଲା) ହାଃ... ହାଃ... ହାଃ-

ନାରୁ- (ହସି ହସି ଆସିଲା) ମୁଁ ଛପିବି କାହିଁକି ? ଆସୁଥିଲି । ସ୍ୱାମୀଜୀଙ୍କ ସ୍ୱର ଶୁଣି ଛିଡା ହେଇଗଲି । ହେଲେ ତମର ଏ ଭିତରେ କଣ ଗୋଟେ ଦୈବୀ ଦୁର୍ଘଟଣା ହେଇ ଯାଇଚି ବୋଲି ଶୁଣିଲି । ତମେ ବିନା ଟିକଟରେ ପାହାଚ ଚଢୁଥିଲ କି ? (ବସିଲା) ।

ଶଙ୍ଖ- (ହସି ହସି) ତମ ମୁଣ୍ଡ ପରା କୁଆଡେ ଚକ୍ରିବାଣ ପରି ଘିରି ଘିରି ହେଇ ଘୁରୁଥିଲା । ତମେ ଏଠି ଆସି କବାଟ ଫାଙ୍କରେ ଛପିଥିଲ କେମିତି ?

ନାରୁ- (ହସି ଉଠିଲା) ହାଃ ହାଃ ହାଃ- ବୁଝିଲ ଶଙ୍ଖବାବୁ ଗୁରୁଦେବଙ୍କ ଲମ୍ବା ପ୍ରବଚନ

ଶୁଣିଦେଇ ମୋ ମୁଣ୍ଡ ତ ଏକଦମ୍ ଡବଲ୍ ସ୍ପିଡ୍‌ରେ ଘୁରିଲା । (ଅଭିନୟ କରି) ମିଷ୍ଟର ନାରୁ ! ଏ ବୟସରେ ମୁଣ୍ଡ ଘୁରିବା ଜମା ଭଲ ଲକ୍ଷଣ ନୁହେଁ । ଆଗ ମୁଣ୍ଡ ଘୁରିବ । ତାପରେ ପାଦ ନଡବଡ ହବ । ଛାତି କମ୍ପିବ । ମନଟା ପବନରେ ଉଡିବ । କବିତା ଲେଖା ରୋଗ ବାହାରିବ । ହୁସିଆର୍- (ଉଭୟେ ହସି ଉଠିଲେ ।)

ଶଙ୍ଖ- ପାଗଳ ବୁଝିଲ ନାରୁ ବାବୁ ପାଗଳ ।

ନାରୁ- ଏବଂ ଲାଙ୍ଗୁଳହୀନ ଶୃଗାଳ- (ଉଭୟେ ହସି ଉଠିଲେ) ଆଚ୍ଛା ଶଙ୍ଖବାବୁ କଥାଟା ପଡ଼ିଲାଣି ଯେତେବେଳେ କହିଦିଏଁ । ସେ ଦକ୍ଷିଣ ପଟ ରୁମ୍‌ରେ ଯୋଉ ଝିଅଟା ଦିମାସ ହେଲା ଆସି ଭଡା ନେଇ ରହିଚି ତମେ ତାକୁ ଦେଖିଚ ?

ଶଙ୍ଖ- ସେଟା ଝିଅ କାହିଁକି ହବ ହୋ ? ସେଟା ତ ରୀତିମତ ଗୋଟେ ସ୍ତ୍ରୀ ଲୋକ । ରଙ୍ଗ ଫଙ୍ଗ ମାରି ଦିଶୁଚି ସିନା ଚବିଶ ପଚିଶ ପରି ହେଲେ ପ୍ରକୃତରେ ଚାଳିଶ ବୟାଳିଶରୁ କମ୍ ହବ ନାହିଁ । ନାଁଟା ହଉଚି ଶୀଲା ସାବତ । ନୟାଗଡ ପାଖରେ କୋଉ ଗାଁରେ ଘର । ଏଠି କୋଉ ଗୋଟେ ମୁତଫର୍କା ଅଫିସରେ ଚାକିରୀ କରେ । ସାଇକେଲ୍ କରି ଅଫିସ ଯାଏ । ସେଟାକୁ ଦେଖିବାକୁ କାହାର ବେଳ ଅଛି ?

ନାରୁ- ବେଳ ନ ଥାଇ ବି ତ ତା ବିଷୟରେ ଏତିକି ଖବର ଯୋଗାଡ କରି ସାରିଲଣି । ଏବେ ଆଉ କି କି ଖବର ଯୋଗାଡ କରିବାକୁ ପାହାଚ ଚଢୁଥିଲ ?

ଶଙ୍ଖ- ତମକୁ ଏଇ ଯୋଉ ମୁଣ୍ଡବୁଲା ରୋଗ ଧରିଚି ସେଟା କଣ ସେଇ ଦାକ୍ଷିଣାତ୍ୟ ରାଜ୍ୟ ଭ୍ରମଣର ଫଳ ? (ଉଭୟେ ହସି ଉଠିଲେ)

ନାରୁ- ବୁଝିଲ ନା ଶଙ୍ଖ ବାବୁ ଆମ ଦାଦା ଗୋଟେ ଦକ୍ଷିଣୀ କଳାମୁହାଁ ମାଙ୍କିଡୀ ପୋଷିଥିଲେ ଯେ ତାଙ୍କ ଛଡା ଯଦି ଅନ୍ୟ କେହି ତା ପାଖକୁ ଗଲା ଏମିତି ଖିଙ୍କାରି ଗୋଡେଇବ ଯେ -

ଶଙ୍ଖ- ସେ ଦାକ୍ଷିଣାତ୍ୟ ରାଜ୍ୟର ମାଙ୍କିଡୀ କଣ ତମକୁ ସେମିତି ଖିଙ୍କାରି ଗୋଡେଇଲା ? ତମେ ତା ପାଖକୁ କାହିଁକି ଯାଇଥିଲ ?

ନାରୁ- ମୁଁ କାହିଁକି ଯିବି ହୋ ? ପାଖକୁ ଯିବା ଦୂରେ ଥାଉ ମୁଁ ତ ଆଜିଯାକେ ତାକୁ ଥରେ ହେଲେ ଦେଖି ବି ନାହିଁ । ତମେ ପାହାଚ ଚଢୁଚ ଦେଖିଥିବ ।

ଶଙ୍ଖ- ମୁଁ ପାହାଚ ଚଢି ନାହିଁ କି ସେଟାକୁ ଦେଖି ନାହିଁ । ଖାଲି ଯାହା ଏକା କମ୍ପାଉଣ୍ଡରେ ରହୁଚେ ବୋଲି ଦିଚାରିଥର ହାବୁଡି ଗଲିଣି । ହେଲେ ନାରୁ ବାବୁ କି ଅପର୍ଚ୍ଛନି ସ୍ତ୍ରୀ ଲୋକ ! ଦେଖି ଦେଲେ ଘୃଣା ହେଇ ଯିବ । ଗାଲ ପଶି ଠକରା । ଦାନ୍ତରୁ ତିନି ଚାରିଟା ବେହେଡା । ବାଳ ଛିଣ୍ଡି ଛିଣ୍ଡି ଥୁଣ୍ଟା ହେଲାଣି । ଆଚ୍ଛା ନାରୁ ବାବୁ ଓଠଟା କାହିଁକି ଏତେ କଳା କିଟି କିଟି ଦିଶୁଚି କି ହୋ ? ବିଡି କି ପିଙ୍କା

ଫିଙ୍କା ଟଣାଟଣି କରୁଚି କି ?

ଶଙ୍ଖ- ତଥାପି ସ୍ୱାମୀ ବୀରେଶ୍ୱରାନନ୍ଦଙ୍କର ଧାରଣା ଯେ ଆମେ ଏଇଭଳି ଏକ ପରମ ରୂପବତୀ ଯୋଜନଗନ୍ଧା ଯୁବତୀଙ୍କ ପ୍ରେମରେ ପଡି ଉବେଇ ଟୁବେଇ ହଉତୁ । କେତେବେଳେ ଟୁବ୍ କିରି ବୁଡିଯିବୁଁ । ହାଃ ହାଃ ହାଃ-ତମେ ଯାହା କହୁଥିଲ ନାରୁବାବୁ ଲାଙ୍ଗୁଳହୀନ ଶୃଗାଳ । ଅରେ ଲାଙ୍ଗୁଳ କଟିଚି ତ ଲାଙ୍ଗୁଳ କଟାକୁ ଭାରି ଭୟ । (ଉଭୟେ ଉଚ୍ଚ ସ୍ୱରରେ ହସି ଉଠିଲେ) ।

## ଦ୍ୱିତୀୟ

(କିଛି ଦିନ ପରେ । ସମୟ ଅପରାହ୍ନ । ଶୀଲାର ରୁମ୍ । ରୁମ୍‌ଟି ବେଶ୍ ସୁନ୍ଦର ଆଉ ପରିଛନ୍ନ ଭାବେ ସଜା ହୋଇଛି । ସାମନା ସାମନି ସୋଫାରେ ବସିଛନ୍ତି ଶୀଲା ଓ ଶଙ୍ଖ । ଶୀଲା ହାତରେ ଗୋଟିଏ ବଡ଼ ଫୁଲତୋଡ଼ା)

ଶୀଲା- (ଫୁଲ ତୋଡ଼ାକୁ ତାରିଫ କରି) ଆଃ ! କି ଚମତ୍କାର ହେଇଚି ଫୁଲ ତୋଡାଟା ! ସତରେ ଶଙ୍ଖବାବୁ- ଭାରି ଚମତ୍କାର ହେଇଚି । (ଫୁଲତୋଡ଼ାକୁ ସୁଂଘି) ଆଃ- ବାସ୍ନାଟା ବି କି ଚମତ୍କାର !

ଶଙ୍ଖ- (କୃତ କୃତ୍ୟ ଭାବ) ହେଁଃ... ହେଁଃ... ହେଁଃ- (ବିଗଳିତ ସ୍ୱର) ଆପଣଙ୍କୁ ଭଲ ଲାଗିଲା ?

ଶୀଲା- ଭାରି ଭଲ ଲାଗିଲା ।

ଶଙ୍ଖ- ହେଁଃ... ହେଁଃ... ହେଁଃ- ଭାରି ଭଲ ଲାଗିଲା ?

ଶୀଲା- (ହସ ହସ ଭାବ) ଭାରି ଭଲ ଲାଗିଲା । ଗୋଲାପ ଚମ୍ପା ମଲ୍ଲୀ ରଜନୀ ଗନ୍ଧା- କେତେ ସୁନ୍ଦର ସୁନ୍ଦର ଫୁଲସବୁ- କି ଚମତ୍କାର ହେଇ ସଜା ହେଇଚି !

ଶଙ୍ଖ- ହେଁଃ... ହେଁଃ... ହେଁଃ- ମୁଁ ନିଜେ ଏ ସବୁ ଫୁଲକୁ ବାଛି ଫୁଲ ପତ୍ର ସବୁ ନିଜେ ଡିଜାଇନ କରି ବନ୍ଧେଇ- ହେଁଃ... ହେଁଃ... ହେଁଃ-

ଶୀଲା- ଇ ମା ! ଏ ତୋଡା ଆପଣଙ୍କର ନିଜ ଡିଜାଇନ୍ ? Really ? ମୁଁ ବି ତ ସେୟା ଭାବୁଥିଲି । ଆପଣ ନିଜେ ବସି ଡିଜାଇନ୍ କରି ତିଆରି କରେଇ ନ ଥିଲେ ଫୁଲ ଦୋକାନୀ କଣ ନିଜେ ଏତେ ସୁନ୍ଦର ଡିଜାଇନ୍‌ଟେ କରି ପାରିଥାନ୍ତା ?

ଶଙ୍ଖ- ହେଁଃ... ହେଁଃ... ହେଁଃ- ମୁଁ ଭାବିଲି ଏଇଠି ପାଖାପାଖି ଏତେ ଦିନ ହେଲା ରହିଚେ । ଅଥଚ ମୁଁ ଆସି ଆପଣଙ୍କୁ ଦେଖା ନ କରିବାଟା- ହେଁଃ... ହେଁଃ... ହେଁଃ- ଶୀଲା ଦେବୀ । ତୋଡା ଭିତରଟା-

ଶୀଲା- ତୋଡା ଭିତରଟା ? ତା ଭିତରେ ବି କିଛି ଅଛି ନା କଣ ?

ଶଙ୍ଖ- ହେଁଃ... ହେଁଃ... ହେଁଃ-

ଶୀଳା- (ତୋଡାକୁ ଆଡେଇ ଦେଖିଲା । ତା ଭିତରୁ ଗୋଟେ ଛୋଟ ହେୟାର ବ୍ରୋଚ ବାହାର କରି) ଆରେ ଯେତ ଗୋଟେ ହେୟାର ବ୍ରୋଚ । ଆଃ ! କି ଚମତ୍କାର ହେଇଚି ଏ ବ୍ରୋଚ । ମୁଁ ଯାକୁ ଆଜି ନିଶ୍ଚେ ପିନ୍ଧିବି । କିନ୍ତୁ ଶଙ୍ଖ ବାବୁ ! ମୁଁ ଆପଣଙ୍କ ଉପରେ ରାଗ ବି କରିବି । ଆପଣ ଏତେ ଟଙ୍କା ଖର୍ଚ୍ଚ କରି ଏତେ ଦାମିକା ଫୁଲ ତୋଡା ହେୟାର ବ୍ରୋଚ ମୋ ପାଇଁ ଆଣିଚନ୍ତି-

ଶଙ୍ଖ- ହେଁଃ... ହେଁଃ... ହେଁଃ- ନାଇଁ ନାଇଁ ନାଇଁ- ଦାମିକା ଆଉ କଣ ? କିଛି ନୁହେଁ- କିଛି ନୁହେଁ । ଆପଣଙ୍କ ପରି ଜଣେ ଉଚ୍ଚଶିକ୍ଷିତା ଉଚ୍ଚ ମହିଳା କ୍ଷମା କରିବେ ସୁନ୍ଦରୀ ମହିଳାଙ୍କ ପାଖକୁ ପ୍ରଥମ ଥର ପାଇଁ ଆସିବି ଅଥଚ ଖାଲି ହାତରେ ଆସିବି- ଏଟା କ'ଣ ଗୋଟେ ଭଲ କଥା ? ସେଇଥିପାଇଁ ଭାବିଲି ଆପଣଙ୍କର ହେଁଃ... ହେଁଃ... ହେଁଃ-

ଶୀଳା- ମୋର ? କଣ ?

ଶଙ୍ଖ- ହେଁ... ହେଁ... ହେଁ- ନାଇଁ- ମାନେ- ମାନେ ଆପଣଙ୍କ ଖୋସା-

ଶୀଳା- ମୋର ଖୋସା ?

ଶଙ୍ଖ- ସତରେ ଭାରି ବଢିଆଁ ହେଇଚି । ଯେମିତି ବଡ ସେମିତି ସୁନ୍ଦର ହେଁଃ ହେଁଃ ହେଁଃ- ସେଇଥିପାଇଁ ଭାବିଲି ଯଦି କିଛି ନେବି ତା ହେଲେ ସେଇ ସୁନ୍ଦର ଜିନିଷଟି ପାଇହିଁ ନେବି- ହେଁଃ ହେଁଃ ହେଁଃ-

ଶୀଳା- ଉ ମା ! ମୋ ଖୋସା ଆପଣଙ୍କୁ ଏତେ ଭଲ ଲାଗିଗଲା ? (ଟିକେ ଅଭିମାନ ସହ) ହେଲେ ଶଙ୍ଖବାବୁ ଖାଲି ମୋ ଖୋସାଟା ଆପଣଙ୍କୁ ସୁନ୍ଦର ଦିଶିଲା (ଟିକେ କଣେଇ ଚାହିଁ) ଆଉ ମୁଁ ?

ଶଙ୍ଖ- ହେଁଃ... ହେଁଃ... ହେଁଃ-

ଶୀଳା- ଆରେ କହନ୍ତୁ ନା-

ଶଙ୍ଖ- ହେଁଃ... ହେଁଃ... ହେଁଃ- ଆପଣ ବି ଭାରି ସୁନ୍ଦର ।

ଶୀଳା- ମିଛ । ମୁଁ ପଚାରିଦେଲି ବୋଲି ଆପଣ ଖାଲି ମୋତେ ଖୁସି କରିବାକୁ କହି ଦଉଚନ୍ତି । ଆପଣ ନିଜେ ତ ମୋତେ କହୁ ନଥିଲେ ।

ଶଙ୍ଖ- ହେଁଃ ହେଁଃ ହେଁଃ- ନାଇଁ ଆଜ୍ଞା ସେ କଥା ନୁହେଁ ଯେ ସେ କଥା ନୁହେଁ ଯେ କାଳେ ଆପଣ ରାଗ କରିବେ ବୋଲି ମୁଁ କହୁ ନ ଥିଲି । ଆପଣ ଯେତେବେଳେ ଅଭୟ ଦେଲେ-

ଶୀଳା- ଆପଣ ସତ କହୁଛନ୍ତି ? ସତରେ ମୁଁ ଭାରି ସୁନ୍ଦର ? ସତରେ ଶଙ୍ଖ ବାବୁ ଆପଣ ଯାହା ଭାବନ୍ତୁ ପଛେ ମୋତେ କେହି ସେମିତି କହିଲେ ମୋତେ ଭାରି ଭଲ ଲାଗେ । ଥରକୁ ଥର ଶୁଣିବାକୁ ମନ ହୁଏ । ଏକା ମୋତେ କାହିଁକି ସବୁ ଝିଅଙ୍କୁ । ଏଇ କଥାରୁ ପରା ବେଳେ ବେଳେ ପ୍ରେମ ବି ଆରମ୍ଭ

ହେଉଯାଏ । ଆପଣ କଣ ଜାଣି ନଥିବେ କି ? (ହସି ଉଠିଲା) ଏଇ ଯାଃ ! ଆପଣ ପ୍ରଥମ କରି ମୋ ପାଖକୁ ଆସିଛନ୍ତି । କେତେ ଦାମିକା ପ୍ରେଜେଣ୍ଟେସନ ମୋ ପାଇଁ ଆଣିଛନ୍ତି । ମୁଁ ଆପଣଙ୍କୁ କଣ ଟିକେ ଦେବି କଣ ବସି ବସି ଆଜେବାଜେ କଥାସବୁ ଗପୁଚି । ନାଇଁ ନାଇଁ ଆପଣ ବସନ୍ତୁ । ମୁଁ ଆପଣଙ୍କ ପାଇଁ-

ଶଙ୍ଖ- (ମଝିରେ) ନାଇଁ ନାଇଁ ନାଇଁ ନାଇଁ କିଛି ଦରକାର ନାହିଁ- କିଛି ଦରକାର ନାହିଁ ଶୀଲା ଦେବୀ ଆପଣ ଜମା ବ୍ୟସ୍ତ ହେବେ ନାହିଁ ମୋର କିଛି ଦରକାର ନାହିଁ । ଆପଣ ବସନ୍ତୁ- Please...

ଶୀଲା- ବସିବାକୁ କଣ ମୋର ମନ ନାହିଁ ? ମୁଁ ନିଜେ ଯେତେ ଆଜେବାଜେ କଥା କହିଲେ ବି ଆପଣଙ୍କ କଥା ଶୁଣିବାକୁ କଣ ମୋତେ ଭଲ ଲାଗୁନାହିଁ ? ଭାରି ଭଲ ଲାଗୁଚି ! ହେଲେ କଣ ହବ ? ଘରଟା ଯାକର କାମ । ଅଥଚ ଲୋକଟିଏ ବି ନାହିଁ । ମୁଁ ଏଠୁ ଗଲେ ବାସନ ମାଜିବି । ଘର ଓଳେଇବି । ରାତି ଓଳି ପାଇଁ ମସଲା ବାଟି ରଖିବି । ଗ୍ୟାସବାଲାକୁ ଗାଳି ଦେବି । ତା ଉପରକୁ ପରିବା କଟା ଚାଉଳ ବଛା ରନ୍ଧାବଢା ତ ଅଛି ।

ଶଙ୍ଖ- ଏ ସବୁ କାମ ଆପଣ ଏକା ଏକା କରୁଚନ୍ତି ? ତାହେଲେ ତ ଭାରି କଷ୍ଟ ହଉଥିବ ।

ଶୀଲା- ହେଲେ ବି କଣ ଆଉ ବା କରିବି ? କିଏ ଆଉ ଏ କାମ ସବୁ ମୋ ପାଇଁ କରିଦବ ?

ଶଙ୍ଖ- ହେଁଃ ହେଁଃ ହେଁଃ- ମୁଁ କଣ କହୁଥିଲି କି ଆପଣଙ୍କର ଯଦି ଆପତ୍ତି ନଥାଏ-

ଶୀଲା- ତା ହେଲେ ?

ଶଙ୍ଖ- ହେଁଃ... ହେଁଃ... ହେଁଃ-

ଶୀଲା- (ହସିଲା) ଓହୋ ବୁଝିଲି । ମୋର ଆପତ୍ତି ନ ଥିଲେ ଆପଣ ମୋ ପାଇଁ ଏ ସବୁ କାମ କରିଦେବେ । ଏୟା ତ ? (ଆହୁରି ଉଚ୍ଛ୍ୱସିତ ହସ ହସିଲା)

ଶଙ୍ଖ- (କିଛିଟା ଅପ୍ରତିଭ) ହେଁଃ... ହେଁଃ... ହେଁଃ- ନାଇଁ ନାଇଁ ମାନେ କଥାଟା କଣ କି ଜଣେ ମହିୟସୀ ମହିଳା ଏମିତି ହଇରାଣ ହଉଥିବେ ଆଉ ଏତେ ପାଖରେ ଥାଇ ସବୁ ଜାଣିଲା ପରେ ବି କିଛି ନ କରିବାଟା-

ଶୀଳା- (ପୂରଣ କଲା ପରି) ଭାରି ଗର୍ହିତ ବ୍ୟାପାର । ବୁଝିଲି । ତେବେ ଲୋକେ କଣ କହିବେ ? ଲୋକେ କହିବେ ଦେଖ ହୋ ସେ ମାଇଚିଆ ଶଙ୍ଖ ସାହୁକୁ । ଶୀଲା ବୋଲି ଗୋଟେ ସ୍ତ୍ରୀଲୋକର ବାସନ ମାଜୁଚି ଘର ପୋଛୁଚି ବାସୀ ଲୁଗା ହକାଳୁଚି ଭାତ ରାନ୍ଧୁଚି-

ଶଙ୍ଖ- କିଏ ସେ ଲୋକ କହିବ ? ଗୋଟେ ମୁଥରେ ମୁଁ ତା ମୁହଁ ଚେପା କରିଦେବି ନାହିଁ ? ମୋର ଯାହା କରିବାକୁ ମନ ହେଲା ମୁଁ ସେ କାମ କରିବି । ଅନ୍ୟମାନେ ସେ ବିଷୟରେ କହିବାକୁ କିଏ ? ମୁଁ ଅଲବତ୍ କରିବି । ମୋର ମନ ହେଲେ ମୁଁ ରାସ୍ତାରେ ବସି ବାସନ ମାଜିବି । ରାସ୍ତାରେ ବସି ଲୁଗା କାଚିବି । ଦେଖିବା କିଏ କଣ କହୁଚି ?

ଶୀଲା- (ହସି ଉଠିଲା) ସତରେ କରିବେ ? ହଉ ହଉ- କରନ୍ତୁ । କିନ୍ତୁ ରାସ୍ତା ଉପରେ ନୁହେଁ । ଘର ଭିତରେ । (ହସିଲା) ହିଃ ହିଃ ହିଃ... ତେବେ ବାସନ ମଜା ପିଠଉ ବଟା ବଡି ପକା ଲୁଗା ହକ୍‌ଲା ଆଉ ଉଳୁଣୀ ମରା, ଯା ଭିତରୁ କୋଉ କାମଟା କରିବେ କହନ୍ତୁ । ମୁଁ ଭାବୁଚି ଆପଣ ବରଂ ଉଳୁଣୀ ମରା କାମ୍‌ଟା କରନ୍ତୁ । ମୁଁ ବାକି ସବୁ କାମ କରି ଦଉଚି । ସେଇ କାମଟା ମୁଁ ନିଜେ କରି ପାରୁନାହିଁ । କରିବେ ? ହିଃ ହିଃ ହିଃ... କାମର ନାଁ ଶୁଣି ଡରିଗଲେ । ନାଇଁ ? (ହସିଲା) ହିଃ ହିଃ ହିଃ- ଯାଃ । ଆପଣ ପ୍ରଥମ ଥର ପାଇଁ ମୋ ଘରକୁ ଆସିଛନ୍ତି । କେତେ ସୁନ୍ଦର ସୁନ୍ଦର ପ୍ରେଜେଣ୍ଟେସନ୍ ସବୁ ଆଣିଛନ୍ତି । ଓଡ଼ିଆ ସିନେମାଟେ ହେଇଥିଲେ ଆମେ ଏତେବେଳକୁ ଯାଇ କୋଉ ଜଙ୍ଗଲ ଫଙ୍ଗଲରେ ବୁଲି ବୁଲି ଦିଚାରିପଟ ନାଚଗୀତ କରି ସାରନ୍ତେଣି । ଅଥଚ ଏଟା ଏମିତି ଗୋଟେ ବାଜେ ଡ୍ରାମା ଯେ ମୁଁ ଆପଣଙ୍କୁ କିଛି ମିଠା ମିଠା କଥା କହିବି କଣ ଆପଣଙ୍କୁ ଉଳୁଣୀ ବଛା କଥା କହୁଚି । ଉଳୁଣୀ ବଛା କଥାରେ କୋଉଠି ଡ୍ରାମା ହୁଏ ? ଏମିତିକା ବାଜେ ଡ୍ରାମାର ଏଇଠି ଡ୍ରପ୍ ସିନ୍ ପଡିବା ଉଚିତ୍ । (ହସି ଉଠିଲା) ହିଁଃହିଁଃହିଁଃ....

ଶଙ୍ଖ- (ତା ସହ ମିଶି ଅତିରଞ୍ଜିତ ଭାବେ) ହେଁଃ... ହେଁଃ... ହେଁଃ-

ଶୀଲା- କିନ୍ତୁ ଶଙ୍ଖ ବାବୁ ଆପଣ କାହିଁକି ମଝିରେ ମଝିରେ ଏମିତି ବାହାରକୁ ତରକି ତରକି ଚାହୁଁଚନ୍ତି ? କଣ କେହି ଆସିବାର ଅଛି ନା କିଏ ଦେଖି ପକେଇବ ବୋଲି ଭୟ ଲାଗୁଚି ?

ଶଙ୍ଖ- (ହଠାତ୍ ସଚେତନ ହୋଇ) ଏଁଃ... ଏଁଃ... ନାଇଁତ ନାଇଁତ...

ଶୀଲା- ମୋତେ କିନ୍ତୁ ଜମା ଭୟ ଲାଗୁ ନାହିଁ । ବରଂ ଭାରି ମଜା ଲାଗୁଚି । ଏମିତି ଗୋଟିଏ ଅଳ୍ପ ଖରା ଅଳ୍ପ ଛାଇର ଅପରାହ୍ନରେ କିଛି ଚୋରା ଚୋରା କିଛି ମିଠା ମିଠା ଗପ କରିବା- ଆପଣଙ୍କୁ ଭଲ ଲାଗୁନାହିଁ ? ନିଶ୍ଚେ ଲାଗୁଚି । ନ ହେଲେ ଆପଣ ସାଢେ ତିନିଟା ବେଳୁ ଅଫିସରୁ କାହାକୁ କିଛି ନ କହି ଖସି ଆସିଚନ୍ତି କାହିଁକି ? ସେଇଥିପାଇଁ ତ ଆପଣଙ୍କୁ ଏମିତି ଛନ ଛନ ଲାଗୁଚି ।

ଶଙ୍ଖ- (ସଚେତନ ଓ ଅପ୍ରତିଭ) ହେଁଃ... ହେଁଃ... ହେଁଃ- ନାଇଁ ନାଇଁ ଆଜ୍ଞା ମୁଁ କହିକିରି ଆସିଚି- କହିକିରି ଆସିଚି ।

ଶୀଳା- ଇ ମା ! ଆପଣ କହିକିରି ଆସିଚନ୍ତି ଯେ ମୁଁ ଶୀଳା ଦେବୀଙ୍କ ପାଖକୁ ଯାଉଚି ଫୁଲତୋଡା ଧରିକି ? କି ଲଜ୍ଜାର କଥା ! ଆପଣଙ୍କ ଅଫିସ ଲୋକେ କଣ ଭାବୁଥିବେ ? ମୋତେ ତ ଆପଣଙ୍କ କଥା ଶୁଣି ଡର୍ ମାଡିଗଲାଣି । ତାଙ୍କ ଭିତରୁ ଯଦି କେହି ଜଣେ ହଠାତ୍ ତଦନ୍ତ କରିବାକୁ ଚାଲି ଆସିଲେ ? କି ବିରକ୍ତ ହେଇ ଖୋଜାଖୋଜି ଆରମ୍ଭ କରି ଦେଲେ ? ମୁଁ ଭାବୁଚି ଆପଣ ବରଂ ଏଥର...

ଶଙ୍ଖ- (କିଛିଟା ମର୍ଯ୍ୟାଦା ବଞ୍ଚାଇବା ଚେଷ୍ଟାରେ) କିଏ ସେ ବିରକ୍ତ ହବ ମୋ ଉପରେ ? କାହିଁକି ବିରକ୍ତ ହବ ? କିଏ ଗୋଟେ ବିରକ୍ତ ହବ ବୋଲି ଭାବି ମୁଁ ମୋ କାମ ନ ସାରି ଚାଲିଯିବି ? ଜମା ଯିବି ନାହିଁ । ଆପଣ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ ।

ଶୀଳା- ଆରେ ନା ନା ଆପଣ କଣ ସତରେ ବାସନ ମାଜିବେ ଲୁଗା କାଚିବେ ନା କଣ ? ଆପଣ ବରଂ ଏଥର ଯାନ୍ତୁ । ପୁଣି ଆଉ କେତେବେଳେ ଆସିବେ । ବସି ଗପ କରିବା । ନମସ୍କାର । (ନମସ୍କାର କଲା) ।

ଶଙ୍ଖ- ନାଇଁ ନାଇଁ ମୋର କିଛି ଅସୁବିଧା ନାହିଁ କିଛି ଅସୁବିଧା ନାହିଁ । ମୁଁ ଆପଣଙ୍କୁ ସାହାଯ୍ୟ କରିଦେବି । ଚାଲନ୍ତୁ ।

ଶୀଳା- ନା... ନା... ନା... ନା... ଶଙ୍ଖ ବାବୁ- ଆପଣ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ- Please ନମସ୍କାର ।

ଶଙ୍ଖ- ହଉ ଆପଣଙ୍କ ଇଚ୍ଛା । କିନ୍ତୁ ସକାଳେ ହଉ କି ସଂଧ୍ୟାରେ ହଉ ଯେତେବେଳେ ଦରକାର ପଡିବ...

ଶୀଳା- Sure sure - ନିଶ୍ଚୟ ଖବର ଦେବି ।

ଶଙ୍ଖ- ମୁଁ ତାହେଲେ ଯିବି ? ହଉ ଯାଉଚି । ନମସ୍କାର- (ବାହାରିଲା) ।

ଶୀଳା- ନମସ୍କାର । ଧନ୍ୟବାଦ । (ଟିକେ ପରେ ପଛରୁ) ଶଙ୍ଖ ବାବୁ !

ଶଙ୍ଖ- (ଭାରି ଆଗ୍ରହରେ ଫେରି ଆସି) ଆଜ୍ଞା !

ଶୀଳା- (ମୁଣ୍ଡକୁ ଜୋରରେ କୁଣ୍ଡାଇ କୁଣ୍ଡାଇ) ଶଙ୍ଖ ବାବୁ । ନାଇଁ ଥାଉ । କହିବି ନାହିଁ । ଆପଣ ଯାନ୍ତୁ ।

ଶଙ୍ଖ- ନାଇଁ ନାଇଁ କହନ୍ତୁ କହନ୍ତୁ Please !

ଶୀଳା- ନାଇଁ ଥାଉ । ଲାଜ ମାଡୁଚି । ଆପଣ ଏତେ ଖର୍ଚ୍ଚାନ୍ତ ହେଇ ମୋ ପାଇଁ ଏତେ ଜିନିଷ ଆଣି ଦେଇଚନ୍ତି । ପୁଣି ତା ଉପରେ-

ଶଙ୍ଖ- କଣ ହେଇଗଲା ସେଥୁ ? ଯେତେ ଦାମିକା ହଉ ପଛେ ମୁଁ ନିଶ୍ଚେ ଖୋଜି ଆଣି ଦେବି । ଆପଣ ଜମା ଚିନ୍ତା କରନ୍ତୁ ନାହିଁ । ହେଲେ ଶୀଳା ଦେବୀ ! ଆପଣ ଆପଣଙ୍କ ମୁଣ୍ଡବାଳକୁ ଏତେ ଜୋର୍‌ରେ ଏମିତି କୁଣ୍ଡଉଚନ୍ତି କାହିଁକି ?

ଶୀଲା- ସେଇ ସେଇ ମୁଣ୍ଡପରା ମୋ ମୁଣ୍ଡକୁ ପାଗଳ କରିଦେଲାଣି । ମୁଣ୍ଡ ସାରା ଉକୁଣୀ । ବେଳେ ବେଳେ ଏତେ ଜୋରରେ କୁଣ୍ଡେଇ ହଉଚି ଯେ ମନ ହଉଚି ସବୁ ବାଳକୁ ଉପାଡି ଫିଙ୍ଗିଦେବି ନ ହେଲେ ପୂରାପୂରି ଲଣ୍ଡା ହେଇପଡିବି ।

ଶଙ୍ଖ- ନାଇଁ ନାଇଁ ଆପଣଙ୍କର ଏତେ ସୁନ୍ଦର ବାଳ- ଏତେ ସୁନ୍ଦର ଖୋସା- ଉପାଡି ପକେଇବେ ? ନାଇଁ ନାଇଁ । ସେମିତି କରନ୍ତୁ ନାହିଁ- Please...

ଶୀଲା- ମୁଁ ଜାଣିଚି ଆପଣଙ୍କ ମନ ଭାରି ଦୁଃଖ ହୋଇଯିବ । କିନ୍ତୁ କଣ କରାଯିବ ? ବେଳେ ବେଳେ ଏମିତି ବେସ୍ତ ଲାଗୁଚି ଯେ- ସେଇଥିପାଇଁ କହୁଥିଲି...

ଶଙ୍ଖ- କହୁ ନାହାନ୍ତି ?

ଶୀଲା- କହିବି ?

ଶଙ୍ଖ- Please ଆପଣଙ୍କର ଯାହା ଇଚ୍ଛା କହନ୍ତୁ ।

ଶୀଲା- ହଉ କହୁଚି । ଶଙ୍ଖ ବାବୁ ! ମୋ ପାଇଁ ଗୋଟେ ଡିବା ଅସଲି ଉକୁଣି ମାରି ଚୂର୍ଣ୍ଣ ଆଣିଦେବେ ?

ଶଙ୍ଖ- (କିଛିଟା ହତାଶ) ଉକୁଣି ମାରି ଚୂର୍ଣ୍ଣ ?

ଶୀଲା- ଢୋଲ୍‌କି ମାର୍କା । ଆଣି ଦେବେ ?

ଶଙ୍ଖ- (ନିରୁତ୍‌ସାହିତ) ହଉ ।

ଶୀଲା:- ତା ହେଲେ ମୁଁ ଗଲି । ନମସ୍କାର । ମନେ ରହିଲା ତ ! ଉକୁଣି ମାରି ଚୂର୍ଣ୍ଣ-

ଶଙ୍ଖ- (ନିରୁତ୍‌ସାହିତ ସ୍ୱର) ଢୋଲ୍‌କି ମାର୍କା । ନମସ୍କାର । (ଚାଲିଗଲା) ।

<u>ତୃତୀୟ</u>

(ତିନି ଦିନ ପରେ । ଶୀଲାର ରୁମ୍ । ନାରୁ ଷଡ଼ଙ୍ଗୀ ଓ ଶୀଲା ସାମନା ସାମନି ସୋଫାରେ ବସିଛନ୍ତି । ମଝିରେ ଗୋଟେ ସେଣ୍ଟର ଟେବୁଲ । ତା ଉପରେ ଗୋଟିଏ ସୁନ୍ଦର ଫୁଲତୋଡ଼ା ଓ ଗହଣା ଡିବା । ସମୟ ସଂଧ୍ୟା) ।

ଶୀଲା- ନାଇଁ ନାଇଁ ନାରୁବାବୁ ଢୋଲ୍‌କି ମାର୍କା ନୁହେଁ ଖୋଲକି ମାର୍କା । ଉକୁଣି ମାରି ଚୂର୍ଣ୍ଣ ହେଲା ଢୋଲ୍‌କି ମାର୍କା । ଯାଦୁର ମଲମ କିନ୍ତୁ ଖୋଲ୍‌କି ମାର୍କା । ମୋତେ ଉକୁଣି ହେଉ ନାହିଁ- ଯାଦୁ ହେଉଚି ।

ନାରୁ- ଆପଣଙ୍କୁ ଯାଦୁ ହେଉଚି ?

ଶୀଲା- କହନ୍ତୁ ନାହିଁ ଆଜ୍ଞା ସେ କଥା । ଦିହ ସାରା । ପେଟ, ପିଠି, ହାତ, ପାଦ, ସବୁଠି ଭର୍ତ୍ତି । ଚକଡା ଚକଡା । ବେଳେ ବେଳେ ଏମିତି କୁଣ୍ଡେଇ ହଉଚି ଯେ...

ନାରୁ- ଆପଣଙ୍କ ପରି ଜଣେ ଏତେ ସୁନ୍ଦର ମାନେ ଇଂରାଜୀରେ ଯାହାକୁ କହନ୍ତି Elegant Ladyଙ୍କ ଦେହରେ... ?

ଶୀଲା- ବିଶ୍ୱାସ ହଉ ନାହିଁ । ନା ? ସେଇ ବିଶ୍ୱାସ ହବ ନାହିଁ ବୋଲି ତ ମୁଁ କାହାରିକି ଆଜିଯାକେ ଲାଜରେ କହି ନାହିଁ । ଖାଲି ଆପଣ ନିଜ ଲୋକ ବୋଲି ଆପଣଙ୍କୁ ଆଜି ପ୍ରଥମ କରି କହିଦେଲି । ଦେଖିବେ କେମିତି ଭର୍ତ୍ତି ହେଇଚି ଦିହଯାକ ? (ଶାଢୀ ଆଡେଇବାକୁ ଉଦ୍ୟତ) ।

ନାରୁ- (ବ୍ୟସ୍ତ ସ୍ୱରରେ) ନାଇଁ ନାଇଁ ନାଇଁ- ଥାଉ ଥାଉ ଥାଉ ।

ଶୀଲା- ବେଳେ ବେଳେ ଏମିତି କୁଣ୍ଡେଇ ହଉଛି ଯେ ଶାଢି ଜାମା ବି ଭଲକରି ପିନ୍ଧି ହଉନାହିଁ । ଏଇ ଆପଣ ଆଜି ଏତେ ସୁନ୍ଦର ପାଉଁଜ ହଳେ ଆଣି ଦେଇଚନ୍ତି । କିନ୍ତୁ ମୋର ପିନ୍ଧିବାକୁ ସାହସ ହଉନାହିଁ । କାହିଁକି ଜାଣନ୍ତି ? ମୁଁ ଯାକୁ ପିନ୍ଧି ବାହାରକୁ ବାହାରିଲେ ଲୋକେ ଥଟ୍ଟା କରି କହିବେ ଏ ସ୍ତ୍ରୀ ଲୋକଟାକୁ ଟିକେ ହେଲେ ଲାଜ ନାହିଁ- ଦିହରେ ଦିହେ ଯାଦୁ । ସେଥିରେ ପାଉଁଜ ପିନ୍ଧି ବାଜା ବଜଉଚି । ଶୁଣିଲେ ମୋ ମନ ଭାରି ଦୁଃଖ ହବ ।

ନାରୁ- (ଜୋର ଦେଇ) କାହିଁକି- କାହିଁକି ଥଟ୍ଟା କରିବେ ? ଯାଦୁ ହେଲାବୋଲି କୋଉ ଶାସ୍ତ୍ରରେ ପାଉଁଜ ପିନ୍ଧିବା ମନା ହେଇଚି ? ଆପଣ ସେ ସବୁ ବାଜେ ଲୋକଙ୍କୁ ଜମା ପରୱା । କରନ୍ତୁ ନାହିଁ । ଆପଣ ପାଉଁଜ ପିନ୍ଧି ଚାରି ଆଡ଼େ ବୁଲନ୍ତୁ । କେହି ଯଦି କିଛି ଥଟା ପଟା କଲା ତା ନାଁ ମୋତେ କହନ୍ତୁ । ମୁଁ ତା କଥା ବୁଝିଦେବି । ମୁଁ କଣ ମିଛଟାରେ ବକ୍ସିଂ ଫକ୍ସିଂ କରୁଚି ? ଆପଣ ପାଉଁଜ ପିନ୍ଧି ଆପଣଙ୍କର ଯ୍ୟାଡେ ଇଚ୍ଛା ସ୍ୟାଡେ ବୁଲନ୍ତୁ । ଦେଖିବା କିଏ କଣ କହୁଚି ।

ଶୀଲା- ତା ହେଲେ ପିନ୍ଧିବି ?

ନାରୁ- ଅଲବତ୍ ପିନ୍ଧିବେ । ମୁ ଅଛି ।

ଶୀଲା- ତା ହେଲେ ପିନ୍ଧା ଯାଉ ।

ନାରୁ- ପିନ୍ଧା ଯାଉ । (ହସିଲା । ଶୀଲା ମଧ ହସିଲା) ଏବେ ପିନ୍ଧାଯାଉ ।

ଶୀଲା- (ଟିକେ ଲାଜ ଲାଜ ସ୍ୱରରେ) ଏବେ ? ନାଇଁ ନାଇଁ ଥାଉ, ପରେ ।

ନାରୁ- ଆରେ ଏଥିରେ ଲାଜ କରିବାର କଣ ଅଛି ? ପିନ୍ଧନ୍ତୁ ।

ଶୀଲା- ନାଇଁ ନାଇଁ ଆପଣ ଅଛନ୍ତି । ରୁଣୁ ଝୁଣୁ ଶବ୍ଦ ହବ । ଅନ୍ୟମାନେ ଜାଣିବେ । ମୋତେ ଲାଜ ମାଡିବ ।

ନାରୁ- (କଥା ଶୁଣି ମନ ଖୁସି) ହେଁଃ ହେଁଃ ହେଁଃ- ଆପଣଙ୍କ ପାଦକୁ କିନ୍ତୁ ଭାରି ଭଲ ମାନିବ । ଆପଣ ଏବେ ଏଇଠି ଟିକେ ପିନ୍ଧିଥିଲେ ମୁଁ ଟିକେ- ହେଁଃ ହେଁଃ ହେଁ...

ଶୀଲା- ଯାଦୁ ପାଦରେ ଆଉ କଣ ଦେଖୁଥାନ୍ତେ ! ହଉ ଆପଣ ପୁଣି ଯେତେବେଳେ ଆସିବେ ନିଶ୍ଚେ ଦେଖିବେ- ଆଉ ଶବ୍ଦ ବି ଶୁଣିବେ । (ହସିଲା) ହିଁଃ ହିଁଃ ହିଁଃ... ।

ନାରୁ- (ତା ସହ ମିଶି ହସିଲା) ହାଃ... ହାଃ... ହାଃ- ଆଉ ଗୋଟେ କିଛି ଆଣିଦେବି କି- ହାତ ପାଇଁ କି ପାଦ ପାଇଁ ?

ଶୀଲା- ନା... ନା... ନା... ନାରୁବାବୁ ଆଉ କିଛି ଆଣିବେ ନାହିଁ- ଆଉ କିଛି ଆଣିବେ ନାହିଁ । ଏଇ ପାଉଁଜ ପାଇଁ କୋଉ ଦିନୁ ଭାରି ମନ ଥିଲା । ଆପଣ ଆଣି ଦେଲେ । ମନ ଖୁସି ଲାଗୁଚି । ଆଉ କିଛି ଦରକାର ନାହିଁ । ଏଇ କଥାରୁ ମନେ ପଡିଲା ଆମ ଭାଉଜଙ୍କର ବି ପାଉଁଜ ପ୍ରତି ଭାରି ଲୋଭ । ବାଛି ବାଛି ହଳେ ପାଉଁଜ କିଣିଥିଲେ ଯେ ସେଥିରେ ଆଠଟା ଖଣ୍ଡେ ଛୋଟ ଘଣ୍ଟି ଲାଗିଥାଏ । ଯୁଆଡ଼େ ଗଲେ ଖଣ୍ଡେ ବାଟରୁ ଭାରି ସୁନ୍ଦର ଟୁଣୁ ଟୁଣୁ ଶବ୍ଦ ହୁଏ । ଭାଇ କହିବେ ଶୀଲୁ ହେଉ ଆଇଲାଣି ସେ ବାଜାବାଲି । ଏଇନା ଘଡିଏ କାଳ ବଜର ବଜର ହୋଇ ବୋର୍ କରିବ । ତୁ ପଳା । ଅସଲ କଥା କଣ ଜାଣନ୍ତି ? ଭାଇଙ୍କ ଇଚ୍ଛା ସେ ନିଜେ ନିରୋଳାରେ ବସି ସେ ବାଜାବାଲି ସାଙ୍ଗରେ ବଜର ବଜର ହେବେ । (ହସିଲା । ନାରୁ ମଧ । ଆବୃତ୍ତି) ଶୁଭି ଶୁଭିଯାଏ ପ୍ରିୟା ନୂପୁରର ରୁଣୁଝୁଣୁ ପାଦଗୀତି/ ଦିଶି ଦିଶି ଯାଏ ମନମୋହିନୀର ମନ ମୋହିବାର ରୀତି/ ଦୂରୁ ଦୂରୁ କମ୍ପେ ପ୍ରିୟର ହୃଦୟ ବଢ଼ି ବଢ଼ି ଯାଏ ତାତି/ ଘାରି ଘାରି ଆସେ ତା ତନୁର ଗନ୍ଧ ଗୁମୁ ସୁମୁ ଲାଗେ ରାତି- ହିଃ... ହିଃ... ହିଃ... ।

ନାରୁ- (ତା ସହ ମିଶି ହସିଲା) ଚମତ୍କାର- ଚମତ୍କାର- ନିଶ୍ଚୟ ଆପଣଙ୍କ ଲେଖା !

ଶୀଲା- ଆପଣଙ୍କୁ ଭଲ ଲାଗିଲା ?

ନାରୁ- ଭାରି ଭଲ ଲାଗିଲା ।

ଶୀଲା- ମିଛ ।

ନାରୁ- ନାଇଁ... ନାଇଁ... ଶୀଲା ଦେବୀ ସତରେ ଭାରି ଭଲ ଲାଗିଲା । (ଆବୃତ୍ତି) ଶୁଭି ଶୁଭି ଯାଏ ପ୍ରିୟା ନୂପୁରର ରୁମୁ ଝୁମୁ ପାଦଗୀତି/ ଦିଶି ଦିଶି ଯାଏ ମନ ମୋହିନୀର ମନ ମୋହିବାର ରୀତି । ଫାଷ୍ଟ କ୍ଲାସ !

ଶୀଲା- (ଆବୃତ୍ତି) ହେଲେ କି କରିବି ସେ ଗୀତ ଶୁଣିଲେ ମନ ଖେଳେ କିଚି କିଚି/ ଯାଦୁଟା ମୋତେ ତ କଲାଣି ଅତିଷ୍ଠ ରାମ୍ପୁ ରାମ୍ପୁ ଦିନରାତି- ହିଃ... ହିଃ... ହିଃ... (ହସିଲା । ନାରୁ ମଧ) ହସି ଦଉଚି ସିନା ମନଟା ତ ସବୁବେଳେ ଯାଇ ସେଇ ଯାଦୁରେ । କି କବିତା ଆଉ ମୁଁ ଲେଖିବି ?

ନାରୁ- ମାର ଗୁଲି ସେ ଯାଦୁକୁ ! ସୁନ୍ଦରୀ ବିଦୁଷୀ ମହିଳାମାନଙ୍କର ଯାଦୁଟେ କାଛୁଟେ ହେଇଗଲା ବୋଲି କଣ ସେମାନେ ଅସୁନ୍ଦରୀ ହେଇଯିବେ ନା କବିତା ଲେଖି ପାରିବେ ନାହିଁ ? ସୁନ୍ଦରୀ ସ୍ତ୍ରୀଲୋକମାନେ ସବୁବେଳେ ସୁନ୍ଦରୀ । ତାଙ୍କ କଥାଇ ହେଲା କବିତା ଯାଦୁ or no ଯାଦୁ । ଆପଣ ସେ ଯାଦୁ ଫାଦୁକୁ ପରଖା କରନ୍ତୁ ନାହିଁ । ପାଉଁଜ ପିନ୍ଧନ୍ତୁ ଆଉ କବିତା ଲେଖନ୍ତୁ । ମୁଁ ଆପଣଙ୍କ ପାଇଁ ଆହୁରି ସୁନ୍ଦର ଘଣ୍ଟିଲଗା ପାଉଁଜ ଆଣିଦେବି । ଝୁମୁ ଝୁମୁ ଶବ୍ଦ କରୁଥିବେ । ମନ ଗଗନରେ ଉଡୁଥିବେ । କବିତାମାନଙ୍କୁ ଯୋଡୁଥିବେ (ହସିଲା) ହାଃ ହାଃ ହାଃ ।

ଶୀଲା- (ହସିଲା) ହିଃ... ହିଃ... ହିଃ... । ନାରୁ ବାବୁ ! ଆପଣ ବି ତ ଦେଖୁଚି ଭାରି Romantic- କବିତା ନ ଲେଖି ବି ଆପଣ ଜଣେ କବି । (ହସିଲା । ନାରୁ ମଧ୍ୟ । ତାରି ଭିତରେ ନାରୁକୁ କିଛି ମୁହୂର୍ତ୍ତ ଲକ୍ଷ୍ୟ କଲା ପରେ) କିନ୍ତୁ ନାରୁ ବାବୁ ଆପଣ ମଝିରେ ମଝିରେ ଏମିତି ତରଙ୍ଗ ତରଙ୍ଗ ହେଇ ବାହାରୁକୁ ଅନଉଚନ୍ତି କାହିଁକି ? ବାହାରେ ତ ଘୋର ଅନ୍ଧାର । ସେ ଅନ୍ଧାର ଭିତରେ କଣ କିଏ ଅଛି ନା କଣ ?

ନାରୁ- (ହଠାତ୍ ସଚେତନ ହୋଇ) ହେଁଃ ହେଁଃ ହେଁଃ... । ନାଇଁତ ନାଇଁତ- କେହି ନାହିଁତ । ଅନ୍ଧାର ଭିତରଟାରେ କିଏ ଆଉ ଥିବ ? କେହି ନାହିଁତ ।

ଶୀଲା- ଆପଣ ଜାଣି ନାହାନ୍ତି ?

ନାରୁ- ନାଇଁତ ।

ଶୀଲା- ଆପଣ ଜାଣିଚନ୍ତି । ଡରିକି କହୁନାହାନ୍ତି- ଅନ୍ଧାର ଘୁଡଘୁଡି ।

ନାରୁ- ଅନ୍ଧାର ଘୁଡଘୁଡି ? ସେ ପୁଣି କିଏ ?

ଶୀଲା- ଅନ୍ଧାର ଘୁଡଘୁଡି କିଏ ଜାଣି ନାହାନ୍ତି ? ପିଲା ଦିନେ ମୋ ବୋଉ ଆମ ଭାଇଭଉଣୀ ଏମିତି ଅନ୍ଧାର ରାତିରେ ଚଗଲାମୀ କଲେ ଚୁପ୍ ଚାପ୍ ବସ ନ ହେଲେ ଅନ୍ଧାର ଭିତରୁ ଅନ୍ଧାର ଘୁଡଘୁଡି ବାହାରିବ ବୋଲି କହି ଡରଉଥିଲା । ସେଟା କୁଆଡେ ଘୋର କଳା ରଙ୍ଗ । ତାର ଏଡେ ଏଡେ ଦାନ୍ତ । ଏଡେ ଏଡେ ନଖ । ସବୁ କଳା ରଙ୍ଗ । ସେଇଥି ପାଇଁ ସେ ଅନ୍ଧାର ଭିତରେ ଲୁଚିକି ରହିଯାଏ । ଛକି ଛକି ଥିବ । ଆପଣ ଯଦି ଟିକେ ଏଣେ ତେଣେ ଚାହିଁଦେଲେ ତା ହେଲେ ହୁଟ୍‌କିରି ଆପଣଙ୍କୁ ମାଡି ବସିବ । ସେ ଘୁଡୁଘୁଡୁ ଶବ୍ଦ କରେ ବୋଲି ତା ନାଁ ଅନ୍ଧାର ଘୁଡୁ ଘୁଡି । ହେଲେ ସେ ଶବ୍ଦ ସମସ୍ତଙ୍କୁ ଶୁଭେ ନାହିଁ । ଯିଏ ଡରିଯାଏ ତାକୁଇ କେବଳ ଶୁଭେ । ଆପଣଙ୍କୁ ଶୁଭୁଚି ?

ନାରୁ- ନାଇଁତ ।

ଶୀଲା- ତାହେଲେ ଆପଣ କାହିଁକି ମଝିରେ ମଝିରେ ଅନ୍ଧାରକୁ ସେମିତି ଛକି ଛକି ଅନଉଚନ୍ତି ? ଆପଣଙ୍କୁ ନିଶ୍ଚେ ଶୁଝୁଚି ଆଉ ଡର ମାଡୁଚି ।

ନାରୁ- ନାଇଁତ । ନାଇଁତ । ମୋତେ ଡର ମାଡୁ ନାଇଁତ । ମୁଁ ଗୋଟେ ଛାର ଅନ୍ଧାର ଘୁଡ ଘୁଡିକି ଡରିବି ? ଜମା ଡରିବି ନାହିଁ ।

ଶୀଲା- ତାକୁ ଜମା ଛାର୍ ବୋଲି କହିବେ ନାହିଁଟି । ଇଲୋ ବାବା ! ସେ ଭାରି ଝମେଲା ଘୁଡଘୁଡି । ଏଇନା ମଣିଷ ପରି ଦିଶିଲାଣି ତ ଆଉ ଟିକକୁ ଖବିସ ପରି ଦିଶିଲାଣି । ପୁଣି ଆଉ ଟିକକୁ ହବିସ ପରି ଦିଶିଲାଣି । ଆପଣ ବରଂ ଏଇ ଅନ୍ଧାର ଭିତରେ ଲୁଚିଛପି ପଳାନ୍ତୁ । ଦେଖି ପକେଇଲେ ଝମେଲା କରିଦବ ।

ନାରୁ- ସେ ଝମେଲା କରି ଦବ ମୁଁ କରି ପାରିବି ନାହିଁ ? ଅଲବତ୍ କରି ଦେବି । ଦେବି ଯେ ଏମିତି ଏକ ମୁଥ ତା ମୁହଁକୁ ତା ମୁହଁ ଏକଦମ୍ ସିଲପଟ୍ ହେଇଯିବ ।

ଶୀଲା- ତାର କଣ ମୁହଁ ଥାଏ ଯେ ଆପଣ ତାକୁ ସିଲପଟ କରିଦେବେ ? ସେ ପରା ଗୋଟେ ଘୁଡଘୁଡି । ଯାହା କହନ୍ତୁ ବାବା ମୋର କିନ୍ତୁ ଅନ୍ଧାର ଘୁଡଘଡିକି ଭାରି ଡର । ଯଦି ଭିତରକୁ ପଶି ଆସିବ ନା-

ନାରୁ- ମୁଁ ଅଛି- ପଶି ଆସିବ ? ଖେଳଘର କଥା ହେଉଚି ? ମୁଁ ତାକୁ ଗୋଟେ ମାଡରେ ସାବାଡ କରି ଦେବି ନାହିଁ ? ଆପଣ ଜମା ଡରନ୍ତୁ ନାହିଁ ।

ଶୀଲା- ନାଇଁ ବାବା ମୋର ତାକୁ ଭାରି ଡର । ଆପଣ ଗଲେ ମୁଁ ସବୁ କବାଟ ଝରକା ବନ୍ଦ କରିଦେବି । ନ ହେଲେ ଭିତରକୁ ପଶିଆସିବ...

ନାରୁ- ତା ହେଲେ ମୁଁ ଯିବି ? ଆପଣଙ୍କୁ ଡର ମାଡିବ ନାହିଁ ? ହଉ ଠିକ୍ ଅଛି । ଯାଉଚି । ହେଲେ ଯଦି ଟିକେ ବି ଡର ମାଡେ ତା ହେଲେ ସାଙ୍ଗେ ସାଙ୍ଗେ ଡାକଟେ ମାରି ଦେବେ । ମୁଁ ସାଙ୍ଗେ ସାଙ୍ଗେ ଚାଲି ଆସିବି । ନମସ୍କାର । (ଦୁଆର ଆଡକୁ ଗଲା) ।

ଶୀଲା- (ପଛରୁ) ନାରୁ ବାବୁ ! ଟିକେ ଶୁଣିବେ ?

ନାରୁ- (ଫେରି ଆସି) ଆଜ୍ଞା ! ରହିବି ?

ଶୀଲା- ନାରୁ ବାବୁ ! ମନେ ଅଛି ତ ? ନିଶ୍ଚେ ଆଣିବେ କିନ୍ତୁ ।

ନାରୁ- ଘଣ୍ଟିଲଗା ପାଉଁଜ ତ ? ନିଶ୍ଚେ ଆଣିଦେବି ।

ଶୀଲା- ହେଇ ତ ଭୁଲିଗଲେଣି ।

ନାରୁ- ଓହୋ ମନେ ପଡିଲା ବଳା ସେଟ୍ । ନିଶ୍ଚେ ଆଣିଦେବି । କାଲି ।

ଶୀଲା- ନାଇଁ ନାଇଁ ବଳା ସେଟ୍ ନୁହେଁ ।

ନାରୁ- ଆଉ କଣ- ନୋଜ ରିଙ୍ଗ୍ ?

ଶୀଲା- ନାଇଁ ନାରୁ ବାବୁ ସେ ସବୁ କିଛି ନୁହେଁ । ଯାଦୁର ମଲମ ।

ନାରୁ- (ଦବି ଗଲା) ଯାଦୁର ମଲମ ?

ଶୀଲା- ଖୋଲ୍‌କି ମାର୍କା । ମନେ ରହିଲା ତ ? ଯାଦୁର ମଲମ-

ନାରୁ- (ନିରୁତ୍‌ସାହିତ) ଖୋଲ୍‌କି ମାର୍କା । ମନେ ରହିବ ।

ଶୀଲା- ବହୁତ ଧନ୍ୟବାଦ- ବହୁତ ଧନ୍ୟବାଦ ଯାଦୁଗୁଡା ପାଇଁ ଯୋଉ କଷ୍ଟ ପାଉଚି- ହଉ ନାରୁ ବାବୁ ନମସ୍କାର- ନମସ୍କାର ।

ନାରୁ- ନମସ୍କାର । (ଚାଲିଗଲା କିନ୍ତୁ ମନଟା ଦବିଗଲା) ।

<u>ଚତୁର୍ଥ</u>

(ପ୍ରାୟ ପନ୍ଦର ଦିନ ପରେ । ଶଙ୍ଖ ସାହୁର ରୁମ୍ । ସାମନା ସାମନି ବସିଛନ୍ତି ଶଙ୍ଖ ସାହୁ ଓ ବୀରେଶ୍ୱର । ସମୟ ସଂଧ୍ୟା)

ବୀରେ- (ଅଳ୍ପ ପିଇ ଚାହା କପ୍ ଟେବୁଲ ଉପରେ ରଖି) ଶଙ୍ଖ ବାବୁ !

ଶଙ୍ଖ- ସାର୍ !

ବୀରେ- ଏବେ ସବୁ ଠିକ୍ ଚାଲିଚି ? Everything Ok ?

ଶଙ୍ଖ- ହଁ ସାର୍ । Everything Ok ।

ବୀରେ- ଆପଣଙ୍କ ପାଦମାନେ ?.

ଶଙ୍ଖ- ଆଉ ଖସୁ ନାହାନ୍ତି ସାର୍ ।

ବୀରେ- Good- କିନ୍ତୁ ମାୟାମାନେ ମାୟାବୀ । ଭୁଲ୍ ନମ୍ବର ଲଗେଇ ଦେବେ । ଭେଲ୍‌କି କରିଦେବେ । ଟାଣି ନେଇ ଚାଲିଯିବେ । ମେଣ୍ଢା ବନେଇ ଦେବେ । ହୁସିଆର୍ ଆଉ କୌଣସି ପାହାଚ ଚଢିବେ ନାହିଁ ।

ଶଙ୍ଖ- ନାଇଁ ସାର୍ ଆଉ ଚଢୁ ନାହିଁ ।

ବୀରେ- Good- Very good- କିନ୍ତୁ ଶଙ୍ଖ ବାବୁ । ମୁଁ ଶୁଣିଲି ଆପଣ କୁଆଡେ ମଝିରେ ମଝିରେ କାହାକୁ କିଛି ନ କହି ତିନିଟା ଚାରିଟା ବେଳକୁ ଅଫିସରୁ ଖସି ଚାଲି ଯାଉଚନ୍ତି । ସେଥିପାଇଁ ଆପଣଙ୍କୁ କୁଆଡେ କୈଫତ ବି ମଗାଯାଇଚି । ସତ ?

ଶଙ୍ଖ- ଏକଦମ୍ ମିଛ ସାର୍ ମୁଁ ଜମା ଅଫିସ୍ ଛାଡି କୁଆଡେ ଯାଉ ନାହିଁ । ହରଦମ୍ ଅଫିସ୍‌ରେ ବସିଚି । ଯେତେବେଳେ ଦେଖିବେ ମୁଁ ଅଫିସରେ ଅଛି । ଜମା କୁଆଡେ ଯାଉନାହିଁ । ହରଦମ୍-

ବୀରେ- (ମଝିରେ) ବୁଝିଲି । ତା ହେଲେ କଥାଟା ମିଛ ?

ଶଙ୍ଖ- ସାର୍ ଏକଦମ୍ ମିଛ । ବିଲ୍‌କୁଲ୍ ମିଛ ।

ବୀରେ- ଆଚ୍ଛା ହଉ ଠିକ୍ ଅଛି । ତେବେ ଆପଣଙ୍କର ଯଦି କେତେବେଳେ କୁଆଡେ ଯିବାକୁ ମନ ହୁଏ ତାହେଲେ ଆପଣ ଅଫିସ ସମୟରେ ଯିବେ ନାହିଁ । ଅନ୍ୟ ସମୟରେ ଯିବେ । ଏଇ ଧରନ୍ତୁ ସଂଧ୍ୟା ସମୟରେ ।

ଶଙ୍ଖ- ଯାଆନ୍ତି ଯେ ସାର୍ ସେତେବେଳେ ଅନ୍ୟମାନେ ବି- (ସଚେତନ) ହେଁଃ... ହେଁଃ... ନାଇଁ ମାନେ ମାନେ-

ବୀରେ- ଶଙ୍ଖ ବାବୁ । ତା ବୋଲି ଆପଣ ଅଫିସ ସମୟରେ ଯିବେ ?

ଶଙ୍ଖ- ଜମା ନୁହେଁ ସାର୍ ଜମା ଯିବି ନାହିଁ । ଯେତେ ଯିଏ କହିଲେ ବି ଜମା ଯିବି ନାହିଁ । ହେଁଃ ହେଁଃ ହେଁଃ... । ସାର୍ ନାରୁ ବାବୁଙ୍କୁ- ଆପଣ ଖୋଜୁଥିଲେ । ଡାକିଦେବି କି ?

ବୀରେ- ଡାକନ୍ତୁ ।

ଶଙ୍ଖ- (ବାହାରକୁ ଆସି) ନାରୁବାବୁ ! ନାରୁବାବୁ ! ସାର୍ ଖୋଜୁଛନ୍ତି । ଆସନ୍ତୁ । ଜଲ୍‌ଦି । (ଫେରି ଆସିଲା)

ନାରୁ- (ତା ଭୁମରୁ) ଯାଉଚି । (ଆସିଲା) ନମସ୍କାର ସାର୍ ।

ବୀରେ- ନାରୁ ବାବୁ ! ସବୁ ଠିକ୍ ଚାଲିଛି ? ମୁଣ୍ଡ ଆଉ ଘୁରୋଉ ନାହିଁ ? ବସନ୍ତୁ ।

ନାରୁ- (ବସିଲା) ନାଇଁ ସାର୍ ଆଉ ଘୁରଉ ନାହିଁ ।

ବୀରେ- ତା ହେଲେ ଆପଣ କାହିଁକି ଯାଦୁର ମଲମ ଖୋଜୁଚନ୍ତି ?

ନାରୁ- (ବୁଝି ନ ପାରି) ଯାଦୁର ମଲମ- ମୁଣ୍ଡ ପାଇଁ ? ନାଇଁ ତ ।

ବୀରେ- ତା ହେଲେ ଆପଣ କାହିଁକି ରତ୍ନାକରକୁ ଖୋଲ୍‌କି ମାର୍କା ଯାଦୁର ମଲମ କୋଉଠି ମିଳେ ବୋଲି ପଚାରୁଥିଲେ ?

ନାରୁ- ନାଇଁତ- ନାଇଁତ- (ହଠାତ ମନେ ପଡ଼ିଲା ପରି) ହିଁ... ହିଁ... ସାର୍ ପଚାରୁଥିଲି ପଚାରୁଥିଲି । ମୋ ଆଇମାର ବହୁତ ଯାଦୁ ହେଉଚି ତ- ଏଥର ମାମୁଁ ଘରକୁ ଯାଇଥିଲି ଯେ ମୋତେ କହିଲା ନାରୁରେ ଯାଦୁ ପାଇଁ ବଡ କଷ୍ଟ ପାଉଚି । ତୁ ମୋ ପାଇଁ...

ବୀରେ- (ମଝିରେ) I see- I see- ହଉ ଠିକ୍ ଅଛି । କିନ୍ତୁ ଆପଣଙ୍କ ଭୁମରୁ କାହିଁକି ବେଳେ ବେଳେ ଟୁଣ୍ଣୁ ଟୁଣ୍ଣୁ ଶବ୍ଦ ଶୁଭୁଚି ଘଣ୍ଟିଲଗା ପାଉଁଜ ପରି ?

ନାରୁ- କେତେବେଳେ ସାର୍ ?

ବୀରେ- ସଞ୍ଜବେଳେ । କଥାଟା କିଛି ଭଲ ଦିଶୁ ନାହିଁ ।

ନାରୁ- ଓହୋ ହୋ ! ବୁଝିଲି ବୁଝିଲି- ଗୋଟେ ଆଲାର୍ମ ଘଡି । ସେଟାରେ ଚାବି ଦେଇ ଦେଲେ ସେମିତି ଟୁଣ୍ଣୁ ଟୁଣ୍ଣୁ ଟୁଣ୍ଣୁ ଟୁଣ୍ଣୁ ଶୁଭୁଥିବ । ମୋ ଜେଜେମା ମୋତେ ଦେଇଥିଲା । ଦେଖିବେ ?

ବୀରେ- ସେଟା ଗୋଟେ ଘଡିର ଆଲାର୍ମ ? ଆଉ କିଛି ନୁହେଁ ? ହଉ ଠିକ୍ ଅଛି । ହେଲେ ଶଙ୍ଖବାବୁ ନାରୁବାବୁ ଗୋଟେ ବିଲେଇ ଯଦି ଅଠା ଲାଗିଥିବା ଗୋଟେ ଛାତ ଉପରକୁ ଚଢିଥାଏ ତା ହେଲେ କଣ ହୁଏ ଜାଣଚି ?

ଶଙ୍କ/ ନାରୁ- ସାର୍ ?

ବୀରେ- (ଆବୃତ୍ତି) ଅଠାକାଣ୍ଡିଆରେ ପଡି ହୁଏ ଇଟର ପଟର/ ନ ପାରେ ବାହାରି ହେଉ ଯେତେ ଫଟର ଫଟର/ ଆଗପାଦ ପଛ ପାଦ ସେଇଠି ହିଁ ଥାଏ/ କେତେ ବାଟ ଗଲିଣିରେ ବିଲେଇ ଭାବୁଥାଏ/ ଖୁସିରେ କୁରୁକୁ ଥାଏ ସେ ବୁଢ଼ୁ ବିଲେଇ/ ଖାଉଚି ଲୁଚେଇ ଯେହ୍ନେ ଶ୍ରୀକ୍ଷୀର ମଲେଇ/ ଏମିତି ଏମିତି ଦିନେ ଚେତା ଯାଏ ହଜି/ କେ ତାରେ ରକ୍ଷା କରିବ ନ ପାରଇ ହେଜି/ କଥାଟିକୁ ତେଣୁ ମନେ ରଖ ହାତେ ହାତେ/ ନ ହେଲେ ଭାଙ୍ଗିବ ଅଣ୍ଟା ଗୋଗଛିଆ ମାତେ ।

ଶଙ୍କ/ ନାରୁ- (ହସି ଉଠିଲେ ।)

ବୀରେ- ହସିଲେ କାହିଁକି ? ହସିଲେ କାହିଁକି ? କଣ ମୋ କଥାଟା ନାପସନ୍ଦ ହେଇଗଲା ?

ଶଙ୍କ- ନାଇଁ ସାର୍ ନାଇଁ ସାର୍ ବହୁତ ପସନ୍ଦ ହେଇଗଲା ତ ସେଇଥିପାଇଁ- ନା କଣ ନାରୁ ବାବୁ ?

ନାରୁ- ହଁ ସାର୍ ବହୁତ ପସନ୍ଦ ହେଇଗଲା- ବହୁତ ପସନ୍ଦ ହେଇଗଲା ।

ଶଙ୍କ- ଯେ ନିଶ୍ଚେ ସାର୍‌ଙ୍କର ନିଜ ଲେଖା ।

ନାରୁ- ପଚାରୁଚନ୍ତି ? ଅନୁମାନ କରିପାରୁ ନାହାନ୍ତି ? (ଆବୃତ୍ତି) କଥାଟିକୁ ତେଣୁ ମନେ ରଖ ହାତେ ହାତେ/ ନ ହେଲେ ଭାଙ୍ଗିବ ଅଣ୍ଟା ଗୋଗଛିଆ ମାତେ । (ହସି ଆସୁଥିଲା । ଅଟକି ଗଲା ନିମ୍ନ ସ୍ୱରରେ) Sorry ।

ରତ୍ନା- (ଆସିଛି) ସାର୍ ! ଟିକେ ଉପରକୁ ଆସନ୍ତୁ । ଫୋନ୍ ଆସିଚି ।

ବୀରେ- କମା ଯିବି ନାହିଁ । ସେଟା ନିଶ୍ଚେ ଆଉ ଗୋଟେ କୋଉ ଭୁଲ ନମ୍ବର ସ୍ତ୍ରୀଲୋକ ହେଇଥିବ ।

ରତ୍ନା- ଭୁଲ ନମ୍ବର ସ୍ତ୍ରୀଲୋକ ନୁହେଁ ଫ୍ରିଜ୍ କମ୍ପାନୀର ।

ବୀରେ- ହୁଁଃ ! ହଉ ଚାଲ୍- (ଗଲେ) ।

ଶଙ୍କ- ବୁଝିଲେ ନାରୁ ବାବୁ ଏକଦମ ପାଗଳ- ଏକଦମ୍ ପାଗଳ- (ଉଭୟେ ହସି ଉଠିଲେ) କିନ୍ତୁ ନାରୁ ବାବୁ ମୁଁ ଶୁଣିଲି ଆପଣଙ୍କର କିଛି ସୁବିଧା ହେଲା ନାହିଁ ବୋଲି ଆପଣ ମନ ଦୁଃଖରେ ଗୋଟେ ଲମ୍ବ ଦାଢୀ କିଣିବାକୁ କୋଉ ଛେଳିଆ ଦୋକାନକୁ ଯାଇଥିଲେ । ସତ ?

ନାରୁ- ମୁଁ ବି ଶୁଣିଲି ଆପଣଙ୍କର ସୁବିଧା ନ ହବାରୁ ଆପଣ ଫଟା ଜାମା କିଣିବାକୁ କୋଉ ରଦ୍ଦିମାଲ ଦୋକାନକୁ ଯାଇଥିଲେ । (ଉଭୟେ ହସି ଉଠିଲେ) ।

ଶଙ୍କ- ଅସଲ କଥା କଣ ଜାଣନ୍ତି ନାରୁ ବାବୁ ଏକାଠି ରହିବା ପ୍ରାୟ ଚାରିମାସ ହେଇଗଲା ଅଥଚ ମୁଁ ତା ସାଙ୍ଗରେ ଦିନେ ପଦେ କଥା ବି ହେଉ ନାହିଁ ।

ନାରୁ- ମୋ ଆଡକୁ ପରା କେତେ ଥର ହମ ହମ ହେଇ ମାଡି ଆସିଲାଣି ଏ ଭିତରେ- କାଳେ ଯଦି ମୁଁ ତା ପାଲରେ ପଡିଯିବି । ହେଲେ ନାରୁ ଷଡ଼ଙ୍ଗୀକି ପାଲରେ ପକେଇବା ଏତେ ସହଜ କଥା ନୁହେଁ ଲୋ ବାବା !

ଶଙ୍ଖ- ଦିନେ ଦିନେ ପରା ଯାଇ ଆମ ଅଫିସ୍‌ରେ ପହଞ୍ଚି ଯାଇ ପଚାରୁଚି ଶଙ୍ଖ ବାବୁ ଅଛନ୍ତି ? ମୁଁ ତା ଆସିବା ସୁରାକ୍ ପାଇଲେ ଏକଦମ୍ ଖସି ପାଉ୍ । ବୁଝୁନା- ଏମିତି ଗୋଟେ ବାଜେ ଅପର୍ଚ୍ଛନ୍ନୀ ସ୍ତ୍ରୀଲୋକ ସାଙ୍ଗରେ ମୋର କିଛି ଭାବଲାଉ ଅଛି ବୋଲି ଜାଣିଲେ ଆମ ଅଫିସବାଲା ମୋତେ କଣ କହିବେ ? ହେଇଟି ନାରୁବାବୁ ସେଟା ସବୁଦିନେ ସକାଳ ନଅଟା ବେଳକୁ କୁଆଡେ ନସର ପସର ହେଇ ଧାଉଁଚି କିହୋ ?

ନାରୁ- ସେ ଗୋଟେ କୋଉ ମୁଡଫର୍କା କମ୍ପାନୀରେ କାମ କରୁଚି । ରିସେପ୍ସନିଷ୍ଟ ।

ଶଙ୍ଖ- ସେ କମ୍ପାନୀ ଜାଣ ବୁଡ଼ିବିଲା । ସେଟା ଯୋଉ ପରମା ସୁନ୍ଦରୀ ରୂପବତୀ ଯୁବତୀ ନା ସେଟାକୁ ଦେଖିଦେଲା ମାତ୍ରେ ତ ଲୋକେ ଦୁଆର ମୁହଁରୁ ଛାଟିପିଟି ହେଇ ପଳେଇବେ । କମ୍ପାନୀ ସାଙ୍ଗରେ ବେପାର କରିବ କିଏ ? (ଉଭୟେ ହସିଲେ) ହେଇଟି ନାରୁବାବୁ ! ସେଟା ଦିହରୁ କୁଆଡେ ପଚାଗନ୍ଧ ବାହାରୁଚି ।

ନାରୁ- ଦିହରେ ଘା ପା ହେଇଥିବ । ଗାଧଉ ନାହିଁ ବୋଧହୁଏ ।

ଶଙ୍ଖ- ସେଟା କୁଆଡେ ହରଦମ୍ ବିଡ଼ି ଟାଣୁଚି । ଘଡଘଡି ପରି ଘୁଙ୍କୁଡି ମାରୁଚି । ବାସୀ ମାଛ କିଣି ଖାଉଚି । ଛି ! କି ଅପରିଷ୍କାର ସ୍ତ୍ରୀ ଲୋକଟା !

ନାରୁ- ହେଲେ ଶଙ୍ଖବାବୁ କହିଦଉଚନ୍ତି ସିନା ସେ ସ୍ତ୍ରୀଲୋକଟା ଯଦି ଆସି ଆପଣଙ୍କୁ ପ୍ରେମ ନିବେଦନ କରେ ଆପଣ କଣ ତାକୁ ଫେରେଇ ଦେବେ ?

ଶଙ୍ଖ- ମୁଁ ତାକୁ କହିବି ଅୟି ଚାରୁଶୀଳେ ସୁନ୍ଦରୀ ମନମୋହିନୀ ! ତୁମ ଅମୂଲ୍ୟ ପ୍ରେମ ପାଇଁ ଏ ଅକିଞ୍ଚନ ଏକାନ୍ତ ଅଯୋଗ୍ୟ କିନ୍ତୁ ଆମ ସେପଟ ରୁମ୍‌ରେ ଯେଉଁ ପରମ ସୁନ୍ଦର ଯୁବକ ଅଛନ୍ତି ଦେଖ ସେ କେମିତି ତାଙ୍କ କବାଟ ଫାଙ୍କରେ ତୁମକୁ ତରକ ତରକ ହେଇ ଚାହୁଁଛନ୍ତି । ସେ ତୁମର ପ୍ରେମ ପାଇଁ କେତେ ଯେ ଉନ୍ନିଦ୍ର ରଜନୀ କାଟିଲେଣି । ତୁମେ ବରଂ ତାଙ୍କରି ପାଖକୁ ଯାଅ । ସେ ତୁମର ଦୁଃଖ ବୁଝିବେ (ଉଭୟେ ହସି ଉଠିଲେ) ।

ନାରୁ- କିନ୍ତୁ ବଂଧୁ ଚିହ୍ନି ରଖ ତାକୁ ହାତେ ହାତେ ।

ଶଙ୍ଖ- ନ ହେଲେ ଭାଙ୍ଗିବ ଅଣ୍ଡା ଗୋଗଛିଆ ମାଡେ । (ଉଭୟେ ଉଚ୍ଚସ୍ୱରରେ ହସି ଉଠିଲେ) ।

(ପ୍ରାୟ ପନ୍ଦରଦିନ ପରେ । ଶୀଲାର ରୁମ୍ । ସୋଫାରେ ସାମନା ସାମନି ବସିଛନ୍ତି ଶୀଲା ଓ ଶଙ୍ଖ ସାହୁ । ସମୟ ରାତି ଆଠଟା ।)

ଶଙ୍ଖ- ମିଳିଲା ନାହିଁ ବୋଲି ଛାଡି ଦେବି ? ମିଳନ୍ତା ବି କେମିତି ଯେ ? ଏଟା ଗୋଟେ ସହର- ଏଠି ପୁଣି ଦୋକାନ ! ସେଗୁଡାଙ୍କର ପିଲ୍ଲ କେତେ ଯେ ସେମାନେ ଏମିତିକା ନାମଯାଦା Aristocratic ମାଲ୍ ରଖିବେ ? ଗୋଟେ ଦୋକାନୀ କହିଲା ଆମେ ଆଜ୍ଞା ଏମିତିକା ମାଲର ନାଁ ଶୁଣିନୁଁ । ଆଉ ଗୋଟେ କହୁଚି କଣ ନା ଏମିତିକା ମାଲ ଆମ ପାଖରେ ନାହିଁ । ରାସ୍ତାକଡ ପଣ୍ଟିମା ଜଡିବୁଟି ବାଲାଙ୍କ ପାଖରେ ଥିଲେ ଥାଇ ପାରେ । ତାଙ୍କ ପାଖରେ ଦେଖନ୍ତୁ । ବୁଦ୍ଧବକ୍ ! ମହିୟସୀ ମହିଳାମାନେ ଯାଇ ସେ ମୂର୍ଖ ଭଣ୍ଡ ପଣ୍ଟିମା ଜଡିବୁଟି ବାଲାଙ୍କ ରାସ୍ତାକଡ ପସରାରୁ ଜିନିଷ କିଣିବେ ? ଆପଣ ଜମା ବ୍ୟସ୍ତ ହେବେ ନାହିଁ । ମୁଁ କଲିକତା ବାଂଗାଲୋର ଦିଲ୍ଲୀ ଫିଲ୍ଲୀ ସବୁଆଡକୁ ଖବର ପଠେଇ ଦେଇଚି । ଦଶ ପନ୍ଦର ଦିନ ଭିତରେ ମାଲ୍ ଆସି ପହଞ୍ଚିଯିବ । ଏକଦମ୍ ଖାଣ୍ଟି ଉକୁଣୀମାରି ଚୂର୍ଣ୍ଣ ତୋଲ୍‌କି ମାର୍କା ।

ଶୀଲା- ନାଇଁ ନାଇଁ ଶଙ୍ଖ ବାବୁ ଆପଣ ବି ଆଉ ଜମା ବ୍ୟସ୍ତ ହେବେ ନାହିଁ । ମୋ ମୁଣ୍ଡରେ ଆଉ ଉକୁଣୀ ନାହାନ୍ତି । ସବୁ ମରିଗଲେଣି ।

ଶଙ୍ଖ- ମରିଗଲେଣି ? କଣ ଆଉ କୋଉଠୁ ଗୋଟେ ଚୂର୍ଣ୍ଣ ପାଇଗଲେ ?

ଶୀଲା- ନାଇଁ ଚୂର୍ଣ୍ଣ ଦରକାର ହେଲା ନାହିଁ । ମୁଁ ଆଉ ଗୋଟେ ଶସ୍ତା ସୁନ୍ଦର ମଜଭୁତ୍ କାମ କରିଦେଲି । ଡେଟଲ୍ ଲଗେଇ ମୋ ମୁଣ୍ଡ ବାଳକୁ ଗରମ ପାଣିରେ ସିଝେଇ ଦେଲି । ପନ୍ଦର ମିନିଟ୍‌ରେ କାମ ଫତେ । ଉକୁଣୀ ଫୁକୁଣି ସବୁ ଖତମ୍ ।

ଶଙ୍ଖ- (ଭାରି ଆଶ୍ଚର୍ଯ୍ୟ) ଆଜ୍ଞା ଆପଣ- ଆପଣଙ୍କ ମୁଣ୍ଡବାଳକୁ- ଗରମ ପାଣିରେ ସିଝେଇ ଦେଲେ ? My God ! (ସାମାନ୍ୟ ହସି) ହେଁଃ ହେଁଃ ହେଁଃ- ନା- ନା- ଆପଣ ମୋତେ ଥଟା କରୁଛନ୍ତି ।

ଶୀଲା- ଥଟା କରୁଚି ? ଜମା ନୁହେଁ । ଦେଖିବେ ? ଆସନ୍ତୁ ଆପଣଙ୍କ ଆଖି ଆଗରେ କରି ଦେଖେଇ ଦେବି । ଏ ବାଳ ପରଚୁଲା କି ମୋର ନିଜ ବାଳ ଜାଣିପାରିବେ । ଆସନ୍ତୁ । ଆରେ ଆସନ୍ତୁ ନା ।

ଶଙ୍ଖ- ନାଇଁ... ନାଇଁ... ଆଜ୍ଞା ଥାଉ- ଥାଉ-

ଶୀଲା- କଣ ଡର ମାଡିଗଲା ? ଜମା ଡରିବାର କିଛି ନାହିଁ । ବୁଡୀ ଅସୁରୁଣୀମାନେ କେମିତି ତାଙ୍କ ଗୋଡକୁ ଚୂଲୀରେ ପୁରେଇ ରନ୍ଧାବଢା କରୁଥିଲେ ସେ ଗପ ଆପଣ ଶୁଣି ନାହାନ୍ତି ? ମୁଁ ତାର ରଳମଟା ଏ ଭିତରେ ଜଣେ ଗୁରୁଙ୍କ ପାଖରୁ

ଶିଖିଯାଇଚି । ଖାଲି ମୁଣବାଳ ନୁହେଁ ହାତ ଗୋଡ ନାକ କାନ ଯାହା ଚାହିଁବେ ତାହା ସିଝେଇ ଦେଇ ପାରିବେ । ଭାରି ଗୁପ୍ତ ଜ୍ଞାନ । କାହାରିକି କହିବାର ନୁହେଁ । ତଥାପି ଆପଣ ଯଦି କହିବେ ଆପଣଙ୍କୁ ବି ଶିଖେଇ ଦେବି । ଶିଖିବେ ?

ଶଙ୍ଖ- ନାଇଁ ନାଇଁ ଆଜ୍ଞା ମୋର ଶିଖିବା ଦରକାର ନାହିଁ । ହାତ ଗୋଡ ସିଝା ! My God !

ଶୀଲା- ହଉ ନ ଶିଖନ୍ତୁ । ଆସନ୍ତୁ ଆପଣଙ୍କର ଗୋଟେ ହାତ- ନାଇଁ... ନାଇଁ... ଗୋଟେ ଆଙ୍ଗୁଳି ସିଝେଇ ଦେଖେଇ ଦେବି । ଆରେ ନା ନା- ଡରନ୍ତୁ ନାହିଁ । ଜମା କଷ୍ଟ ହବ ନାହିଁ । ଆଙ୍ଗୁଳିଟା ଏକଦମ୍ ସୁନା ପରି ଚକ୍ ଚକ୍ ରଙ୍ଗ ହେଇଯିବ । ଆସନ୍ତୁ- ଆସନ୍ତୁ ଯିବା ।

ଶଙ୍ଖ- ଆଜ୍ଞା ନାଇଁ... ନାଇଁ... ଥାଉ ଥାଉ- ଦରକାର ନାହିଁ- ଦରକାର ନାହିଁ ।

ଶୀଲା- (ହସି ଉଠିଲା) ହିଁଃ ହିଁଃ ହିଁଃ... । ବହୁତ ଡରିଗଲେ ନିଶ୍ଚେ । ଏ ଝିଅଟା ପ୍ରକୃତରେ ଗୋଟେ ବୁଢୀ ଅସୁରୁଣୀ ନା ସିଝାଖିଆ ଡାହାଣୀ ନା କଣରେ ବାବା ? ମୁଣ୍ଡ ବାଳକୁ ସିଝେଇ ଦଉଚି- ଆଙ୍ଗୁଳିକୁ ସିଝେଇଦବ ବୋଲି କହୁଚି ! (ହସିଲା) ହିଁଃ ହିଁଃ ହିଁଃ... । ହଉ ଛାଡନ୍ତୁ ସେ କଥା । ଏଥର ଆପଣ ଯୋଉଥିପାଇଁ ଆସିଛନ୍ତି ସେ କଥାଟା ପଡୁ । ସେ କଥାଟି ହେଲା ଆମେ ଦୁହେଁ କାଲି ଏକାଠି ସିନେମା ଯିବା । Right ?

ଶଙ୍ଖ- ହିଁଃ... ହିଁଃ... ହିଁଃ... । ହଁ ସେଇ କଥା । ସେଥିପାଇଁ ଟିକଟ Ready । ଟାକ୍ସି ବି Ready । ଖାଲି ଆପଣ ଯଦି ଦୟା କରି -

ଶୀଲା- ଆରେ ଏଥିରେ ଦୟା କରିବାର କଣ ଅଛି ? ଆପଣଙ୍କ ପରି ଜଣେ ସୁନ୍ଦର ସୁଠାମ ଯୁବକଙ୍କ ସାଙ୍ଗରେ ଏକାଠରେ ବସି ଗୋଟିଏ ସୁନ୍ଦର ଫିଲ୍ମ ଦେଖିବା ତ ଗୋଟେ ଭାରି ଭାଗ୍ୟର କଥା । କଥାଟା ଶୁଣିଲା ମାତ୍ରେ ହିଁ ତ ମୋତେ ଭାରି ଖୁସି ଲାଗିଯାଉଛି । କିନ୍ତୁ ଶଙ୍ଖବାବୁ ଫିଲ୍ମର ନାଁଟା ଶୁଣିଲା ପରେ ମୋର ଗୋଟେ ପୁରୁଣା କବିତା ମନେ ପଡି ଯାଉଛି । (ଆବୃତ୍ତି) ଜହ୍ନ ହାତରେ ପଠାଉଛି ପ୍ରିୟ/ ତୁମକୁ ମୋ ପ୍ରେମ ପତର/ ଏ ଜହ୍ନ ଉଇଁଲେ ଆକାଶରେ ତୁମ/ ଦେବ ତା ହାତେ ଖଣ୍ଡେ ଉତ୍ତର/ ତୁମ ମୋ ମଝିରେ ଥାଉ ପଛେ ଯେତେ ଘନ ବନ ଗିରି କାନ୍ତାର/ ତଥାପି ମୁଁ ରହି ଅଛି କାନ ଡେରି/ ପ୍ରିୟ ହେ/ ଶୁଣିବାକୁ ତୁମ ଓଠରୁ ପ୍ରେମ କଥା ପଦେ ମାତର ।

ଶଙ୍ଖ- (ଅଳ୍ପ ଶବ୍ଦରେ ତାଳି ମାରି) ଚମତ୍କାର- ଚମତ୍କାର କବିତା । ନିଶ୍ଚେ ଆପଣଙ୍କର ଲେଖା (ଶୀଲା କୃତକୃତ୍ୟର ହସ ହସିଲା) ଆପଣ ନିଜେ ଯେମିତି ସୁନ୍ଦର ଆପଣଙ୍କ କବିତା ବି ।

ଶୀଲା- ସତରେ ! ଆପଣଙ୍କୁ ଭଲ ଲାଗିଲା ? ଆଃ ! How nice ! କିନ୍ତୁ ଶଙ୍ଖ ବାବୁ ! ଏ କବିତାଟା ମନେ ପଡିଗଲେ ମୋ ମନ ଯେତିକି ଖୁସି ହୁଏ ସେତିକି ଦୁଃଖ ବି ହୁଏ ।

ଶଙ୍ଖ- କାହିଁକି ଶୀଲା ଦେବୀ ?

ଶୀଲା- ଛାଡନ୍ତୁ । କଣ ଲାଭ ଆଉ ସେ କଥା କହିବାରେ ?

ଶଙ୍ଖ- କହନ୍ତୁ ନା- Please- ଯଦି ମୁଁ କିଛି କରିପାରେ ।

ଶୀଲା- ଶଙ୍ଖବାବୁ ! ଆପଣ କେବେ କୋଉ ଝିଅକୁ ଭଲ ପାଇଚନ୍ତି ?

ଶଙ୍ଖ- (ସଲ୍ଲଜ ଭାବସହ) ହେଁଃ... ହେଁଃ... ହେଁଃ...

ଶୀଲା- ସେତିକି ଗଭୀର ଆବେଗ ନ ଥିଲେ ମୋ ମନର ଦୁଃଖ କଥା ଆପଣ ବୁଝି ପାରିବେ ନାହିଁ ଶଙ୍ଖ ବାବୁ ଅନେକ ଦିନ ଧରି ମୁଁ ସ୍ୱପ୍ନ ଦେଖୁଥିଲି ଦିନେ କୌଣସି ଏକ ସୁନ୍ଦର ସୁଠାମ ଯୁବକଙ୍କ ସାଙ୍ଗରେ ମୋର ଦେଖା ହେଉଯିବ ଆଉ ସେଇ ପ୍ରଥମ ଦେଖାରେହିଁ ତାଙ୍କ ସାଙ୍ଗରେ ମୋର ପ୍ରେମ ହେଇଯିବ । ସେ କିନ୍ତୁ ମୋ ପାଖରେ ରହି ପାରିବେ ନାହିଁ । ଦୂରରେ ଥାଇ ପ୍ରତିଦିନ ମୋତେ ଗୋଟିଏ ଲେଖାଁ ବିରହୀ ପ୍ରେମପତ୍ର ଲେଖୁଥିବେ ଆଉ ମୁଁ ତାକୁ ଏକାନ୍ତରେ ବସି ବସି ପଢୁଥିବି । ଆପଣ ଜାଣନ୍ତି ନାହିଁ ଶଙ୍ଖବାବୁ ପ୍ରେମପତ୍ର ପଢିବାକୁ ମୋତେ କେତେ ଭଲ ଲାଗେ । କିନ୍ତୁ ଶଙ୍ଖବାବୁ ସେମିତି କିଛି ମୋ ଭାଗ୍ୟରେ ଘଟିଲା ନାହିଁ । କାହାରି ସାଙ୍ଗରେ ମୋର ପ୍ରେମ ହେଲା ନାହିଁ କି କେହି ହେଲେ ଖଣ୍ଡେ ପ୍ରେମପତ୍ର ମୋତେ ଦେଲେ ନାହିଁ । (ଦୀର୍ଘଶ୍ୱାସ) ଭାଗ୍ୟ ! ଭାଗ୍ୟ !

ଶଙ୍ଖ- (ଟିକେ ପରେ) ଶୀଲା ଦେବୀ !

ଶୀଲା- କହନ୍ତୁ ।

ଶଙ୍ଖ- (ସଲ୍ଲଜ) ନାଇଁ ଥାଉ । ଆପଣ ରାଗ କରିବେ ।

ଶୀଲା- ଆରେ ନା ନା ରାଗିବି କାହିଁକି ? କହୁନାହାନ୍ତି ? କହନ୍ତୁ- Please !

ଶଙ୍ଖ- ହେଁଃ ହେଁଃ ହେଁଃ... । ଶୀଲା ଦେବୀ ! ମାନେ ମାନେ- ଶୀଲା ଦେବୀ ! ଆପଣ ମୋ ଉପରେ ରାଗ କରିବେ ନାହିଁ- Please- ଆପଣଙ୍କୁ ଦେଖିଲା ଦିନରୁହିଁ, ହେଁଃ ହେଁଃ ହେଁଃ...

ଶୀଲା- (ଉତ୍ସାହିତ କଲା ପରି) କହନ୍ତୁ- କହନ୍ତୁ- ଭଲ ଲାଗୁଚି ଶୁଣିବାକୁ । କହନ୍ତୁ- ଆପଣଙ୍କୁ ଦେଖିଲା ଦିନରୁ ହିଁ- କଣ ହେଲା ମୋତେ ଦେଖିଲା ଦିନରୁହିଁ ? କହନ୍ତୁ ନା-

ଶଙ୍ଖ- ହେଁଃ... ହେଁଃ... ହେଁଃ... ଆପଣଙ୍କୁ ଦେଖିଲା ଦିନରୁହିଁ ମୋତେ ଆପଣ ଏତେ ଭଲ ଲାଗିଯାଇଚନ୍ତି ଯେ ମୁଁ ସବୁଦିନେ ରାତିରେ ଏକା ଏକା ବସି

ବସି କେତେ ଯେ ପୃଷ୍ଠା ଭରି ଦେଉଚି ।

ଶୀଲା- (ଉଲ୍ଲସିତ ସ୍ୱରରେ) What do you mean ? କଣ କହୁଚନ୍ତି ଆପଣ ? ଖଣ୍ଡେ ପ୍ରେମପତ୍ର ପାଇଁ ମୁଁ ଏତେ ଦିନ ହେଲା କେତେ ଆତୁର ହେଇ ବସିଚି । ଅଥଚ ଆପଣ ମୋର ଏତେ ପାଖରେ ଥାଇ ଏତେ ପ୍ରେମପତ୍ର ମୋ ପାଖକୁ ଲେଖି ମୋତେ ଖଣ୍ଡେ ବି ଆଜିଯାକେ ଦେଇନାହାନ୍ତି ? ତଥାପି ଆପଣ କହୁଚନ୍ତି ମୁଁ ଆପଣଙ୍କୁ ଭାରି ଭଲ ଲାଗିଯାଉଚି ? କଥାଟା ଶୁଣିଲା ପରେ ମୋତେ ଏତେ ଦୁଃଖ ଲାଗୁଚି (ଟିକେ ରହି ଟିକେ ଜୋର୍ ଦେଇ) କାଲି- କାଲି ସକାଳେ ଆପଣ ମୋତେ ଆପଣଙ୍କର ସେ ସବୁ ପ୍ରେମପତ୍ର ଆଣି ଦେଇଯିବେ । ମୁଁ ତାକୁ ଛାତରେ ବସି ବସି ପଢ଼ିବି ।

ଶଙ୍ଖ- ହେଁଃହେଁଃହେଁଃ...ନାଇଁ...ନାଇଁ...ମୋତେ ଭାରି ଲାଜ ମାଡିବ । ଆପଣଙ୍କୁ ବି ଭଲ ଲାଗିବ ନାହିଁ ମୋ ଲେଖା-ହେଁଃ ହେଁଃ ହେଁଃ... ।

ଶୀଲା- (ଜୋର ଦେଇ) ମୁଁ କିଛି ଶୁଣିବି ନାହିଁ । ଆପଣ କାଲି ସକାଳେ ସବୁ ଚିଠି ଆଣି ମୋତେ ଦେଇଯିବେ । ତା ଛଡା ପ୍ରତିଦିନ ରାତିରେ ଯୋଉ ଚିଠି ଲେଖିବେ ତାକୁ ବି ଆଣି ତା ପରଦିନ ସକାଳେ ମୋତେ ଦେଇଯିବେ । ହେଲା ?

ଶଙ୍ଖ- (ଭାରି ଖୁସି) ହେଁଃ ହେଁଃ ହେଁଃ... ହଉ ଦେଇଯିବି ।

ଶୀଲା- (ଆବୃତ୍ତି) ଛାତରେ ପଡିଚି ସକାଳର ଖରା ଘାସରେ ପଡିଚି କାକର/ ମହା ଆନନ୍ଦରେ ପଢୁଚି ବସି ମୁଁ ତୁମ ଦିଆ ପ୍ରେମ ପତର/ ଜାଣି ମୁଁ ନଥିଲି ଲୁଚାଇ ରଖିଚ ଏତେ କଥା ତୁମ ଭିତର/ ବାନ୍ଧିଦେଲ ମୋତେ ତୁମ ପ୍ରେମଜାଲେ ଜାଣ ସତେ କେତେ ସୁନ୍ଦର/ ହେଲେ ବନ୍ଧୁ ହେ ଜମୁ ନାହିଁ ଜମା ମଜା/ ବିତି ଖଣ୍ଡେ ନାହିଁ ବୋଲି ଲାଗୁଅଛି ପାଟିଟା ବତର ବତର- (ହସିଲା) ହିଁ ହିଁ ହିଁ...

ଶଙ୍ଖ- (ଶୀଲା ସହ ମିଶି ହସିଲା କିଛିଟା ଅତିଶଯତା ସହ)ହେଁଃ ହେଁଃ ହେଁଃ-

ଶୀଲା- ଶଙ୍ଖବାବୁ ! ଭୁଲିବେ ନାହିଁ । କାଲି ସକାଳେ ।

ଶଙ୍ଖ- ହେଁଃ ହେଁଃ ହେଁଃ... ନାଇଁ ନାଇଁ ଭୁଲିବି ନାହିଁ । କାଲି ସକାଳେ ଚିଠି । ଆଉ ସନ୍ଧ୍ୟାରେ ଫିଲ୍ମ । ଫିଲ୍ମ ପରେ ମାର୍କେଟିଂ । ତାପରେ ଡିନର୍ । ଭାବିଥିଲି ଆଗରୁ ଯାଇ କିଣି ଆଣିବି- ଆପଣ ପିନ୍ଧି ଫିଲ୍ମ ଦେଖିବାକୁ ଯିବେ । ତାପରେ ଭାବିଲି ନାଇଁ ବରଂ ଆପଣ ନିଜେ ଦେଖି ବାଛିବା ଉଚିତ୍ ।

ଶୀଲା- (କୃତ୍ରିମ ଭୟ ପ୍ରକାଶ କରି) କଣ ଶାଢ଼ୀ ? ନା... ନା... ନା... ନା- Please ! Please ! ଆଉ ଶାଢ଼ୀ ଫାଢ଼ୀ କିଛି ନୁହେଁ ବାବା ଘରେ ଆଉ ଯାଗା ନାହିଁ । ଥାକ ଥାକ ଆଲମାରୀ ଫାଲମାରୀ ସବୁ ଭର୍ତ୍ତି । ଏଇ ଦେଖୁନାହାନ୍ତି ସେ ଥାକରେ କେତେ Presentation ଶାଢ଼ୀ ଜମା ହେଇଚି । ପଚାଶ

କି ଷାଠିଏ । ଆହୁରି ପନ୍ଦର କୋଡିଏଟା ବି ଏଠି ସେଠି ପଡିଚି ।

ଶଙ୍ଖ- ଏରେ ଶାଢ଼ି- କିଏ ଦେଲା ଏତେ ଶାଢ଼ୀ ? କିଏ ସେ ଲୋକସବୁ ?

ଶୀଲା- ସମସ୍ତଙ୍କ ନାଁ କଣ ମନେ ଅଛି ? ତେବେ ତାଙ୍କ ଭିତରେ ଅବଶ୍ୟ ଜଣେ ଲୋକ ସବୁଠୁ ବେଶୀ-

ଶଙ୍ଖ- କିଏ ସେ ଲୋକଟା ?

ଶୀଲା- ଛାଡନ୍ତୁ ସେ କଥା । ମୁଁ ଅବଶ୍ୟ ତାଙ୍କୁ ଆଉ ଦବାକୁ ମନା କରି ଦେଇଚି । ହେଲେ କଣ ହବ ? କାହିଁକି ଯେ ସେ ମୋତେ ଏତେ ଭଲ ପାଇ ଯାଇଚନ୍ତି ଯେତେ ମନା କଲେ ବି ଏତେ ଶାଢି ଫାଢି ବ୍ଲାଉଜ ପ୍ଲାଉଜ ଆଣି ଗଦା କରିଦଉଚନ୍ତି-କଣ କରିବି ?

ଶଙ୍ଖ- ବୁଝିଲି ବୁଝିଲି ସେଇ ରାସ୍କେଲଟା । ନାଇଁ ? ସେଇ ରାସ୍କେଲଟା ତାହେଲେ ଲୁଚି ଛପି ପଶି ଏ ସବୁ କରୁଚି । ମୋ ପିଠିପଟେ ମାନେ behind my back । ମୁହଁରେ ଏମିତି ମିଠା ମିଠା କଥା ଯେ ମୁହଁ ବାନ୍ଧି ହେଇଯିବ । ତେଣେ ମୁଁ ଟିକେ ମୁହଁ ଆଡେଇ ଦେଲେ- ଆଚ୍ଛା ହଉ ଦେଖିବା କେମିତି ତୁ ରାସ୍କେଲ କୋଉ ଗହୀର ପାଣିରେ ଲୁଚିବୁ । ତତେ ଯଦି ମୁଁ ଘୋସାରି ଆଣି ରାସ୍ତାରେ ନଙ୍ଗା କରି ଛିଡା କରି ନ ଦେଇଚି ! ଆରେଃ ! ମୋ ସାଙ୍ଗରେ ଖେଳ ଖେଳୁଚି ! ଶୀଲା ଦେବୀ ! ଆପଣ ସେଟାକୁ ଜମା ଚିହ୍ନି ନାହାନ୍ତି । ଖାଲି ଆପଣଙ୍କୁ ଭୁଲେଇବା ପାଇଁ ଚହଟ ଚିକ୍କଣ କଥା କହୁଚି । ପ୍ରକୃତରେ ସେଟା ଗୋଟେ ନିହାତି ବାଜେ ବଜାରୀ ଲଫଙ୍ଗାଟେ । ତା ମତଲବ୍ ଭାରି ଖରାପ । ଚାକିରୀରେ ବହୁତ ଟଙ୍କା ଲାଞ୍ଚ ଖାଉଚି । ସେଇ ଟଙ୍କାରେ ଶାଢ଼ୀ କିଣି ଆଣି ବୁଝିଲେ ଶୀଲା ଦେବୀ ସେଗୁଡ଼ା ସବୁ ପାପ ଶାଢ଼ୀ । ଏଣେ ଶାଢ଼ୀ ଆଣି ଗଦା କରି ଦଉଚି । ତେଣେ ପଛରେ ଯାହା ସବୁ କହୁଚି- ଛାଡନ୍ତୁ ସେ କଥା । ହୀନ ପ୍ରପଞ୍ଚ ଲୋକଟା ।

ଶୀଲା- ନାଇଁ... ନାଇଁ... ଶଙ୍ଖ ବାବୁ ଆପଣ କହନ୍ତୁ । Please !

ଶଙ୍ଖ- ସେ ବାଜେ କଥା ଆପଣଙ୍କ ପରି ଜଣେ ବିଶିଷ୍ଟ ମହିୟସୀ ମହିଳାଙ୍କୁ କହିବାକୁ ଜମା ଇଚ୍ଛା ହଉ ନାହିଁ । ଆପଣଙ୍କ ମନ ଭାରି ଦୁଃଖ ହେଇଯିବ । ଭାରି ରାଗ ବି ହେଇଯିବ ।

ଶୀଲା- ନାଇଁ... ନାଇଁ... ଆପଣ କହନ୍ତୁ ।

ଶଙ୍ଖ- କହୁଚି ଆପଣ କୁଆଡେ ଜମା ମାଟ୍ରିକ ପାସ କରିନାହାନ୍ତି । ଏମ୍. ଏ. ଏଲ୍. ଏଲ୍. ବି. ର ଜାଲ୍ ସାର୍ଟିଫିକେଟ ଦେଖେଇ ଚାକିରୀ ପାଇଚନ୍ତି । ସେ ଯୋଉଦିନ ମନ କରିବ ସେଦିନ ଆପଣଙ୍କୁ ଧରେଇ ଦେଇ ହଲାପଟା କରିଦବ । ଆପଣ କୁଆଡେ ଖର୍ଚ୍ଚ ବଞ୍ଚେଇବାକୁ ଏମିତି ଶସ୍ତା ମାଛ କିଣି ଖାଉଚନ୍ତି ଯେ ଲୁଗାପଟାରୁ

ଖାଲି ଆଇଁଷିଣିଆ ଗନ୍ଧ ବାହାରୁଚି । ବିଡି ଟାଣି ଟାଣି ଆପଣଙ୍କ ଓଠ କଳା ପଡିଗଲାଣି ବୋଲି ଆପଣ ଏତେ ମୋଟାର ଲିପ୍‌ଷ୍ଟିକ ଲଗଉଚନ୍ତି ।

ଶୀଲା- ସତରେ ? ଏୟା ସବୁ କହୁଛନ୍ତି ? Very bad !

ଶଙ୍ଖ- ଆହୁରି ବି ଅଛି । ଆପଣ କୁଆଡେ ଲୁଚେଇ ଲୁଚେଇ ଗଞ୍ଜେଇ ଟାଣନ୍ତି । ଇମିଟେସନ ଗହଣାକୁ ସୁନାଗହଣା ବୋଲି ବିକି ଦେଇ ଆପଣ କୁଆଡେ ଥରେ ପୋଲିସ୍ ହାତରେ ଧରା ପଡିଥିଲେ । ଛାଡନ୍ତୁ ଆଉ କହିବି ନାହିଁ । ସେ ବାଜେ ଲୋକଟାକୁ ଆପଣ ଆଉ ଜମା ପ୍ରଶ୍ରୟ ଦେବେ ନାହିଁ । ଜମା ଘର ଭିତରକୁ ପୂରେଇ ଦେବେ ନାହିଁ । ସେ ଯେତିକି ଶାଢ଼ୀ ଫାଢ଼ୀ ଦେଇଥାନ୍ତା ମୁଁ ତାର ଦିଗୁଣ ଶାଢ଼ୀ ଆପଣଙ୍କୁ ଦେଇଯିବି । ଆଉ ଆପଣ ମନା କରିବା ସତ୍ତ୍ୱେ ଯଦି ଘରେ ପଶିବାକୁ ଝମେଲା କଲା ତାହେଲେ ମୋତେ ସାଙ୍ଗେ ସାଙ୍ଗେ ଡାକଟେ ମାରିଦେବେ । ମୁଁ ତାକୁ ମାରିବି ଏମିତି ଏକ ଜବ୍‌ର ବାଁ ହାତିଆ ଥାପଡ ଯେ ସେ ଆଉ ଦିନେ ଆପଣଙ୍କ ଦୁଆର ମାଡିବ ନାହିଁ ।

ଶୀଲା- ବିଚରା !

ଶଙ୍ଖ- ବିଚରା ନୁହେଁ ବେଇମାନ ବଦମାସ୍ ବଜାରି । ସେଟାକୁ ସେୟା ଦରକାର । ତାହେଲେ ଶୀଲା ଦେବୀ ଆମର ଯୋଉ ଫିଲ୍ମ ଯିବା କଥା ହଉଥିଲା ସେଟା ତାହେଲେ ପକ୍କା ହେଲା ?

ଶୀଲା- ପକ୍କା ହେଲା ।

ଶଙ୍ଖ- (ଭାରି ଖୁସିରେ) Oh ! Thank you- Thank you- ଶୀଲା ଦେବୀ ! Thank you very much- କାଲି ତାହେଲେ ଫିଲ୍ମ ପରେ ମାର୍କେଟିଂ ତାପରେ ଡିନର- ଆଃ- ଆଃ- କି ଭାଗ୍ୟ !

ନାରୁ- (ମଝିରେ ବାହାରେ କବାଟରେ ଟିପା ମାରି ମୋଲାୟମ ସ୍ୱରରେ) ଶୀଲା ଦେବୀ !

ଶଙ୍ଖ- (ଅଟକି ଯାଇ) କିଏ ? କିଏ ଡାକିଲା ?

ଶୀଲା- କିଏ ଡାକିଲା ? ଆପଣଙ୍କୁ ଶୁଭିଲା ?

ନାରୁ- (ପୂର୍ବ ପରି) ଶୀଲା ଦେବୀ !

ଶଙ୍ଖ- (ଶଙ୍କିତ) ଶୀଲା ଦେବୀ ! ଏଟା କଣ ନାରି ସ୍ୱର ପରି ଶୁଭୁଚି ।

ଶୀଲା- ମୋତେ ବି ତ ଶୁଭୁଚି ।

ଶଙ୍ଖ- ଏଟା ଛୁଟି ନେଇ ଗାଁକୁ ଯାଉଚି ବୋଲି କହୁଥିଲା । ପୁଣି କେମିତି ଏତେ ରାତିରେ ଆସି ପହଞ୍ଚି ଗଲାଣି । ଶୀଲା ଦେବୀ । ଜମା ଖୋଲିବେ ନାହିଁ ଯେତେ ଡାକିଲେ ଡାକୁ ଥାଉ । ଡାକି ଡାକି ଶେଷରେ ପଳେଇବ ।

ନାରୁ- (ପୂର୍ବପରି ବାହାରୁ) ଶୀଲା ଦେବୀ ! ଖୋଲନ୍ତୁ । ମୁଁ ନାରୁ ।

ଶଙ୍ଖ- (ଈଷତ୍ ଉଚ୍ଚସ୍ୱରରେ) ଚୋଓପ୍ !

ଶୀଲା- ହାଁ... ହାଁ- ଆସ୍ତେ ଆସ୍ତେ । ନାରୁବାବୁ ଯଦି ଶୁଣି ପକେଇବେ ନା ଏକଦମ୍ ଝମେଲା ହେଇଯିବ । ସେ ବକ୍ସିଂ ଫକ୍ସିଂ ଜାଣନ୍ତି ।

ଶଙ୍ଖ- ସେ ବକ୍ସିଂ ଫକ୍ସି ଜାଣିଥିଲେ ମୁଁ ବି କ୍ୟାରାଟେ ଫ୍ୟାରେଟେ ଜାଣେ । ଡରିବାର କିଛି ନାହିଁ । ଡାକୁ ଥାଉ । ଜମା ଖୋଲିବେ ନାହିଁ ।

ନାରୁ- (ବାହାରେ) ଶୀଲା ଦେବୀ ! କାହାର ଗୋଟେ ସ୍ୱର ଶୁଭିଲା । ଆଉ କିଏ ଭିତରେ ଅଛି କି ?

ଶୀଲା- ହେଇ ହେଇ ଆପଣ ଏତେ ଜୋର୍‌ରେ କହି ଦେଲେ, ନାରୁବାବୁ ଶୁଣି ପକେଇଲେ । ଝମେଲା ହେଇଗଲା । ସେ ତ ଏଥର ଆଉ ସହଜରେ ଯିବେ ନାହିଁ । ଆମେ ଗୋଟେ କାମ କରିବା । ମୁଁ କବାଟଟା ଅଳ୍ପ କି ଖୋଲି ଦଉଚି । ସେ ଯେମିତି ଟିକେ ଭିତରକୁ ମୁହଁ ଗଳେଇଚନ୍ତି ଆପଣ ତାଙ୍କୁ ଦେବେ ଯେ ଏମିତି ଏକ ବାଁହାତିଆ ଥାପଡ କସି ଯେ ସେ ଏକାଥରେ ହାଉଲୁ ମାଉଲୁ ହେଇ କୁଆଡେ ନାଇଁ କୁଆଡେ ଧାଇଁ ପଳେଇବେ । ମୋ ନାଁରେ ଏତେ କଥା କହୁଛନ୍ତି- ନିହାତି ବଜାରି ଲୋକ- ପାଆନ୍ତୁ ପାନେ ।

ଶଙ୍ଖ- ଠିକ୍ ଅଛି । ଖୋଲି ଦିଅନ୍ତୁ । ମୁଁ ତାକୁ ଦେଖି ନଉଚି । ରାସ୍କେଲ !

ଶୀଲା- ମୁଁ ତାହେଲେ ଖୋଲିଲି । (କବାଟ ପାଖରେ ଫିସ୍ ଫିସ୍ ସ୍ୱରରେ) Ready ? ଏ... କ୍... ଡୁ... ର...

ଶଙ୍ଖ- ହଁ... ହଁ- ମୁଁ- Ready ଯେ ମୁଁ Ready ଯେ ତେବେ କଥାଟା କଣ କି ମୁଁ ଭାବୁଚି ଏତେ ରାତିରେ ଆପଣଙ୍କ ରୁମ୍‌ରେ କାହାରିକି ମରାମରି କରିବାଟା- ସେଟା ହଲ୍ଲା କରିବ- ଲୋକ ଜମିଯିବେ- ସେଇଥି ପାଇଁ ମୁଁ କଣ କହୁଥିଲି କି ମାନେ- ମାନେ- ମୁଁ- ମୁଁ ବରଂ ଯା ଭିତରେ କୋଉଠି ଟିକେ ଲୁଚି ଯାଉଚି । ଆପଣ ତାକୁ ସେଇ ଦୁଆରୁ ଦୁଆରୁ ବିଦା କରି ଦିଅନ୍ତୁ ।

ଶୀଲା- ସେ ଯଦି ନ ଗଲେ ? ଭିତରକୁ ପଶି ଆସି ଆପଣଙ୍କୁ ଧରି ପକେଇଲେ ତାହେଲେ ? ସେ ବକ୍ସିଂ ଫକ୍ସିଂ ଜାଣନ୍ତି । ଆପଣଙ୍କୁ ମୋତେ ଯଦି ବିଚାରିଟା ମୁଥ ଫୁଥ ମାରି ଦେଲେ ?

ଶଙ୍ଖ- (ଶଙ୍କିତ) ଶୀଲା ଦେବୀ ! ବଡ ଝମେଲା ହେଇଗଲା । କଣ କରିବା ?

ଶୀଲା- ମୁଁ ଭାବୁଚି-

ଶଙ୍ଖ- କଣ ଭାବୁଚନ୍ତି ଆଜ୍ଞା ?

ଶୀଲା- ମୁଁ ଭାବୁଚି ଆପଣ ବରଂ ଆମ ପଛପଟ ପାଚିରୀ ଡେଇଁ ପଳାନ୍ତୁ ।

ଶଙ୍ଖ- ଏଁ ! ପଛପଟ ପାଚିରୀ ଡେଇଁ ପଳେଇବି ? ନାଇଁ ନାଇଁ ନାଇଁ ନାଇଁ ଶୀଲା

ଦେବୀ ଏତେ ବଡ ପାଚିରୀ- ମୁଁ ଡେଇଁ ପାରିବି ନାହିଁ ।

ନାରୁ- (ବାହାରେ) ଶୀଲା ଦେବୀ ! ଆପଣ କଣ ଶୋଇ ପଡିଚନ୍ତି କି ?

ଶଙ୍ଖ- (ଚାପା ରାଗ ସ୍ୱରରେ) ଚୋ- (ଅଟକି ଗଲା)

ଶୀଲା- ହେଇ ନାରୁବାବୁ ପୁଣି ଡାକିଲେଣି । ଡେରି ହେଲେ ଯଦି ଜୋର୍‌ରେ ଡକାଡକି କରିବେ ଝମେଲା ହେଇଯିବ । ଆପଣ ଆଉ ଜମା ଡେରି କରନ୍ତୁ ନାହିଁ ।

ଶଙ୍ଖ- ହେଲା ଯେ ଆଜ୍ଞା ସେ ଯୋଉ ଅକାତକାତ ପାଚିରୀ ତାକୁ ମୋର ଜାତ ଜମା ପାଇବ ନାହିଁ ଶୀଲା ଦେବୀ ମୋ ଗୋଡ ହାତ ଭାଙ୍ଗି ଚୂନା ହେଇ ଯିବ । ମୁଁ ବରଂ ଯାଇ ଭିତରେ କୋଉଠି ଟିକେ- Please- Please-

ଶୀଲା- ପାରିବେ ପାରିବେ । ଠିକ୍ ପାରିବେ । ପତଳା ଦିଶୁଚନ୍ତି ସିନା ଆପଣଙ୍କ ଦିହରେ ବହୁତ ବଳ । ପାଚିରୀ ସେପଟ ସଫେଇ ଲେନ୍‌ରେ ବି ଭାରି ନରମ କାଦୁଅ । ଆପଣ ତାରି ଉପରେ ପଡିବେ । ଦିହକୁ ଜମା କାଟିବ ନାହିଁ । ଏକଦମ୍ ଭେଲଭେଟ୍ ଗଦି ପରି ନରମ ଲାଗିବ । ଯାନ୍ତୁ । Please ଜଲ୍‌ଦି ।

ଶଙ୍ଖ- (ଦବିଲା ସ୍ୱରରେ) ସଫେଇ ଲେନ୍‌ଟା କଣ ଗୋଟେ କୁଶନ ଗଦି ଶୀଲା ଦେବୀ- ସେଥିରେ ପରା ଖାଲି ଗନ୍ଧ ପଙ୍କ । ତା ଭିତରେ ଲଟର ପଟର ହେଇ ଗଲେ ମୁଁ କଣ ଆଉ ମଣିଷ ହେଇ ରହିବି ? ଶୀଲା ଦେବୀ ଟିକେ ଦୟା- ଟିକେ ଦୟା-

ଶୀଲା- ଯିବେ ନାହିଁ ? ଘା ଭିତରେ ଲୁଚିବେ ? ଲୁଚନ୍ତୁ । ନାରୁ ବାବୁଙ୍କ ବାହୁ ଦିଟାକୁ ଦେଖିଛନ୍ତି ତ ? ଆପଣଙ୍କୁ ଯଦି ଧରି ପକେଇଲେ ଟେକି ନେଇ ସିଧା ଆରପଟକୁ ଫିଙ୍ଗି ଦେବେ । ସେଟା କଣ ଭଲ ହବ ?

ନାରୁ- (ବାହାରେ) ଶୀଲା ଦେବୀ ! ମୁଁ ପରା କେତେବେଳୁ ଡାକିଲିଣି ।

ଶୀଲା- ଶଙ୍ଖ ବାବୁ ! ଶୁଣୁଚନ୍ତି ?

ଶଙ୍ଖ- (ଭୟଭୀତ) ତା ହେଲେ ଯିବି ? ସେଇ ବାଟେ ? ଘା ଭିତରେ ସୁବିଧା ହବ ନାହିଁ ? ହରିହରି ହରିହରି ! ପ୍ରଭୁ ହେ ! ତୁମ ଦୟା ହେଲେ କୁଆଡେ ପଙ୍ଗୁମାନେ ବି ଗିରି ଲଂଘନ କରି ପାରନ୍ତି । ମୁଁ ପରା ଏ ପାଚିରୀ ପାଇଁ ପଙ୍ଗୁଠୁଁ ବି ହୀନ ଜୀବଟିଏ । ମୋତେ ଏ ପାଚିରୀ ଡେଇଁବାକୁ ଟିକେ help କରି ଦିଅ ପ୍ରଭୁ ତମର ବହୁତ ବହୁତ ନାଁ ହବ । ହଉ ରହରେ ସ୍କାଉଣ୍ଡ୍ରେଲ ନାରୁ ମୁଁ ଏଥର ଟିକେ ଅଜଡିଆରେ ପଡିଯାଇଛି ବୋଲି- ନ ହେଲେ ଦେଖିଥାନ୍ତୁ ଗୋଟେ ବାଁ ହାତିଆ ଥାପଡରେ କେମିତି ମୁଁ ତୋର ଗୋଟେ ଘୋର ଦୁର୍ଘଟଣା କରି ଦେଇଥାନ୍ତି ।

ଶୀଲା- ଶଙ୍ଖ ବାବୁ ! ଡେରି ହଉଚି ।

ଶଙ୍ଖ- ହଉ ହଉ ଗଲି ଗଲି- ହରିହରି ହରିହରି ହରିହରି- (କହି କହି ଚାଲିଗଲା) ।

ନାରୁ- (ବାହାରୁ କିଛୁତ ଉଚ୍ଚସ୍ୱରରେ ଓ କବାଟରେ ଶବ୍ଦ ସହ) ଶୀଳା ଦେବୀ ! Please- Please !

ଶୀଳା- କିଏ ?

ନାରୁ- (ବାହାରେ) ଆଜ୍ଞା ! ମୁଁ । ନାରୁ । ନାରୁ ଷଡ଼ଙ୍ଗୀ ।

ଶୀଳା- ଆରେ ଆପଣ ? ଖୋଲୁଚି ଖୋଲୁଚି ଖୋଲୁଚି । (ଯାଇ ଖୋଲି ଦେଲା) ଆପଣ କେତେବେଳୁ ? ବଡ ପାଟିରେ ଡାକିଲେ ନାହିଁ ? ବାହାରେ ଯୋଉ ଥଣ୍ଡା ଆପଣଙ୍କୁ ନିଶ୍ଚେ ଭାରି କଷ୍ଟ ହେଉଥିବ । ଆସନ୍ତୁ ଆସନ୍ତୁ ଭିତରକୁ ଆସନ୍ତୁ । ରୁହନ୍ତୁ ମୁଁ କବାଟଟା ବନ୍ଦ କରି ଦିଏଁ । (ବନ୍ଦ କଲା) ଚାଲନ୍ତୁ (ଆସି ଉଭୟେ ବସିଲେ) Sorry ଖୋଲିବାରେ ମୋର ଟିକେ ଡେରି ହେଇଗଲା ।

ନାରୁ- ହେଁଃ... ହେଁଃ... ହେଁଃ- ନାଇଁ ନାଇଁ ଡେରି ଆଉ କଣ ? ଆପଣ ଭାରି ବ୍ୟସ୍ତ ଥିଲେ ନିଶ୍ଚୟ ।

ଶୀଳା- ବ୍ୟସ୍ତ କଥା ଆଉ କହନ୍ତୁ ନାହିଁ । ଏଇ ଦେଖୁନାହାଁତି ଶୋଇବାକୁ ନରମ ଲାଗେ ବୋଲି କନ୍ଥାଟେ ସିଲେଇ କରୁଚି ଯେ କରୁଚି । ଆପଣ ଏତେ ଡାକିଲେଣି ମୋତେ ଜମା ଶୁଭୁ ନାହିଁ । କେତେ ଅସୁନ୍ଦର କଥା କହିଲେ ! ଆପଣ ଜଣେ କେତେ ବିଶିଷ୍ଟ ବ୍ୟକ୍ତି । କେଜାଣି କେତେବେଳୁ ଧୈର୍ଯ୍ୟ ଧରି ମୋ ଦୁଆରେ ଛିଡା ହେଇଚନ୍ତି । ଅଥଚ ମୁଁ ଛାର ଗୋଟିଏ କନ୍ଥା ପାଇଁ- ନାରୁବାବୁ । ଆପଣଂକୁ ନିଶ୍ଚେ ଭାରି କଷ୍ଟ ହେଉଥିବ । କପେ ଚାହା କି କଫି ପିଅନ୍ତୁ ।

ନାରୁ- ନାଇଁ ନାଇଁ ନାଇଁ - କିଛି ଦରକାର ନାହିଁ । କିଛି ଦରକାର ନାହିଁ । ଆପଣ ବସନ୍ତୁ । ଆଚ୍ଛା ଶୀଳା ଦେବୀ ! ଭିତରୁ ମଝିରେ କାହାର ଗୋଟେ କଥା ଶୁଭୁଥିଲା ।

ଶୀଳା- (ବିସ୍ମୟ ପ୍ରକାଶ କରି) କଥା ? ଯା ଭିତରେ ? ଓହୋ ହୋ ! ଆପଣ ଡରେଇ ଦେଲେ । ମୁଁ ଭାବିଲି ଯା ଭିତରେ ଭୂତ ପ୍ରେତ ଅଛନ୍ତି ନା କଣ ? ସେ କଥାଟା କାହାର ଜାଣନ୍ତି ? ଟିଭିରେ ଗୋଟେ ନାଟକ ହଉଥିଲା- ଦୈବୀ ଦୁର୍ଘଟଣାକୁ କମ୍ପାନୀ ଦାୟୀ ନୁହେଁ । ଯେ ଟିଭି ଦେଖିବାକୁ ମୋତେ ବେଳ କାହିଁ ? ଟିକେ ପରେ ବନ୍ଦ କରିଦେଲି ।

(ହଠାତ୍ ଅଳ୍ପ ଦୂରରେ କିଛି ଗୋଟେ ଓଜନିଆ ଜିନିଷ ପଡିବାର ଶବ୍ଦ ହେଲା)

ନାରୁ- କଣ ଗୋଟେ ଗଦ୍ କରି ପଡିଲା ।

ଶୀଳା- କୋଉଠି ?

ନାରୁ- ଆପଣଙ୍କ ଘର ପଛ ପଟୁ ଶବ୍ଦଟା ଆସିଲା । କଣ ପଡିଲା ?

ଶୀଲା- ଯେ ତ ଆଉ ଏକ ଭୌତିକ ଶବ୍ଦ । ହେଲେ ଭୂତମାନେ ଡେଇଁଲେ କି ପଡିଲେ ତ କିଛି ଶବ୍ଦ ହେବାର କଥା ନୁହେଁ ।

ନାରୁ- ଆପଣଙ୍କ ପଛପଟ ପାଚିରୀ ସେ ପଟେ ଯୋଉ ପଙ୍କ ତା ଭିତରେ ଯଦି ଭୂତଟେ ପଡିଯାଇଥିବ ନା ସେ ତା ଆଉ ଭୂତଜନ୍ମଯାକେ ବି ତା ଭିତରୁ ବାହାରି ପାରିବ ନାହିଁ (ଉଭୟେ ହସି ଉଠିଲେ) ।

ଶୀଲା- ତେବେ ମଜା କଥାଟା କଣ ଜାଣନ୍ତି ? ମୁଁ ଏକଦମ୍ ଏକା ଏକା ରହୁଚି ତ ଭୂତପ୍ରେତ ଦିଟାରି ଜଣ ପାଖରେ ଥିଲେ ମୋତେ ଅନ୍ତତଃ ଆଉ ଡର ମାଡିବ ନାହିଁ । କିଏ ଟିଭି ଭିତରେ ପଶି ନାଟକ କଲାଣି ତ ଆଉ କିଏ ଗଦ୍ ଗାଦ୍ କରି ପାଚିରୀ ଡେଇଁଲାଣି । (ଉଭୟେ ହସିଲେ)

ନାରୁ- କିନ୍ତୁ ଆପଣ ଆଉ କେତେ ଦିନ ଏମିତି ଏକା ଏକା ଚାଲିବେ ? ମୁଁ ଭାବୁଚି ଆପଣ ଆଉ ଡେରି କରନ୍ତୁ ନାହିଁ । ଏଥର ବରଂ-

ଶୀଲା- (ପୂରଣ କଲା ପରି) ବାହା ହେଇ ପଡନ୍ତୁ । ଏୟା ତ ? (ହସି ଉଠିଲା) ହିଃ ହିଃ ହିଃ... କିନ୍ତୁ ସ୍ୱାମୀଟେ ଆସିଲେ କଣ ବାସନ ମାଜିବେ ନା ରନ୍ଧାବଢା କରିବେ ନା ଜଞ୍ଜା ସିଲେଇ କରିବେ ? ବରଂ ମୋର କାମ ଦିଗୁଣ ହେଇଯିବ । ଜଣକର ବାସନ ମାଜୁଚି- ଦିଜଣଙ୍କର ମାଜିବି । ଜଣକ ପାଇଁ ରାନ୍ଧୁଚି- ଦିଜଣଙ୍କ ପାଇଁ ରାନ୍ଧିବି । ଗୋଟେ ଜଞ୍ଜାରେ ଚଳିଯାଉଚି । ଦିଟା ଜଞ୍ଜା ସିଲେଇ କରିବାକୁ ପଡିବ । ନାଇଁ ବାବା ମୁଁ ଏମିତି ଅଛି ବେଶ୍ ଭଲ ଅଛି । ଆପଣମାନେ ଆସୁଚନ୍ତି । ଗପସପ ହଉଚି । ହସଖୁସି ହଉଚି । ବେଳ କଟିଯାଉଚି । ଧରନ୍ତୁ କୋଉଦିନ କଣ ଗୋଟେ କାମ ଅଧିକା ପଡିଗଲା ସେ ଦିନ ଆପଣଙ୍କୁ କହିଲେ ଆପଣ ବାସନ ଦଶବାର ଖଣ୍ଡ ମାଜି ଦେବେ ନାହିଁ ନା ଭାତଟା ଗାଳି ଦେଇ ପାରିବେ ନାହିଁ ନା ଗୋଟେ ଯୋଡେ ରୁମ୍ ପୋଛି ଦେଇ ପାରିବେ ନାହିଁ ? ନିଶ୍ଚେ କରିଦେବେ ।

ନାରୁ- ହେଁଃ... ହେଁଃ... ହେଁଃ... । ଅବଶ୍ୟ ଅବଶ୍ୟ-

ଶୀଲା- (ହସିଲା) ହେଁଃ... ହେଁଃ... ହେଁଃ- ତେବେ ନାରୁବାବୁ ଆପଣଙ୍କର ବାହା ହବା ଆଇଡିଆଟା ମନ୍ଦ ନୁହେଁ । କିନ୍ତୁ ସେଥିପାଇଁ ଭଲ ବରଟିଏ ତ ନିହାତି ଦରକାର । ଭାବୁଚି ଖବରକାଗଜରେ ଗୋଟେ ବିଜ୍ଞାପନ ଦେଇ ଦେବା । ଜଣେ ସୁନ୍ଦରୀ ସ୍ୱାସ୍ଥ୍ୟବତୀ ଯୁବତୀଙ୍କ ପାଇଁ ଗୋଟେ ସ୍ୱାମୀ ଦରକାର । ତାଙ୍କର ବୟସ ଗୋଲେଇ ମୋଟେଇ ଲମ୍ବେଇ ଏତିକି ଏତିକି ହେବା ଦରକାର । ତାଙ୍କ ମୁଣ୍ଡରେ ବହୁତ ବାଳଥିବା ଦରକାର । ତାହେଲେ କଳି କଜିଆ ହେଲେ ଉଭୟେ ଉଭୟଙ୍କର ବାଳକୁ ଟାଣି କଥାଟାର ସମାଧାନ କରିଦେଇ ପାରିବେ । କୋର୍ଟ କଚେରୀ ଯାଇ ସମାଧାନ କରିବା ଅପେକ୍ଷା ଶସ୍ତା ପଡିବ । ଆଉ ଯାହା

କରନ୍ତୁ ନ କରନ୍ତୁ ବାସନମଜା ଘରପୋଛା ରନ୍ଧାବଢ଼ା ହାଟବାଟ ଅବଶ୍ୟ କରିବେ । ସପ୍ତାହରେ ଦିନେ ଛୁଟି । ସେଦିନ ତାଙ୍କୁ ଲଘୁ କାମ ଦିଆଯିବ- ଯେମିତି ସ୍ତ୍ରୀଙ୍କର ଉକୁଣି ବଛା, ନଖକଟା ଆଙ୍ଗୁଳି ଫୁଟା ଇତ୍ୟାଦି ଇତ୍ୟାଦି । ଦରମା କିଛି ମିଳିବ ନାହିଁ । ସେ ନିଜେ ରୋଜଗାର କରି ଆଣି ନିଜକୁ ଓ ସ୍ତ୍ରୀଙ୍କ ଚଳେଇବେ । ନିଶ ରଖି ପାରିବେ ନାହିଁ । ରଖିଲେ ମୋଡି ପାରିବେ ନାହିଁ । ମୋଡିଲେ ବି ଉପରକୁ ଉଠେଇ ପାରିବେ ନାହିଁ । ନିର୍ବାଚିତ ପ୍ରାର୍ଥୀ କେବଳ ଦଶଟି ଲୁଂଗୀ ଦଶଟି ତଉଲିଆ ଛଡା ଅନ୍ୟ କିଛି ଯୌତୁକ ଆଣିବା ଦରକାର ନାହିଁ । କାରଣ ଏଗୁଡ଼ିକ ତାଙ୍କର ଘରଡ୍ୟୁଟି ପାଇଁ ଦରକାର । ଆଗ୍ରହୀ ପ୍ରାର୍ଥୀମାନେ ଫର୍ମ ଆଦି ପାଇଁ ଶହେ ପଚାଶ ଟଙ୍କା ସହ ନିମ୍ନଲିଖିତ ଠିକଣାରେ ଯୋଗାଯୋଗ କରିପାରନ୍ତି । କଣ ଭାବୁଚନ୍ତି ଦରଖାସ୍ତ ଆସିବ ନାହିଁ ? (ଉଭୟେ ହସି ଉଠିଲେ)

ନାରୁ- ନିଶ୍ଚୟ ଆସିବ । ବହୁତ ଦରଖାସ୍ତ ଆସିବ । ଆପଣଙ୍କ ସ୍ୱାମୀ ହବାର ଭାଗ୍ୟ କେତେ ଜଣକୁ ମିଳେ ? ବହୁତ ଆସିବ ।

ଶୀଲା- Very good- କିଛି ପଇସା ବି ମିଳିଯିବ । ଆଚ୍ଛା ନାରୁ ବାବୁ ଆପଣ ?

ନାରୁ- ହେଁ... ହେଁ... ହେଁ...

ଶୀଲା- କାମର ତାଲିକା ଶୁଣି ନିଶ୍ଚେ ଡରିଗଲେଣି । ନାଇଁ ? କିନ୍ତୁ ମୁଁ ଜାଣେ, ଆଉ ଜଣେ ଅଛନ୍ତି ଯେତେ କାମ ପଡୁ ପଛେ·ସେ ନିଶ୍ଚେ ଦରଖାସ୍ତ କରିବେ ।

ନାରୁ- କିଏ ? କିଏ ସେ ଲୋକ ?

ଶୀଲା- ସେ ପରା ହେଲେ ଭାବୀ ସ୍ୱାମୀ । ସ୍ୱାମୀ ବି ହେଇ ପାରନ୍ତି । ତାଙ୍କ ନାଁ କେମିତି ଧରିବି ? ତେବେ ଆପଣ ତାଙ୍କୁ ଭଲ କରି ଜାଣନ୍ତି ।

ନାରୁ- ଏମିତିରେ ତ ମୁଁ କେତେ ଲୋକଙ୍କୁ ଜାଣେ । ତେବେ ଏ ଲୋକଟା... ବୁଝିଲି ବୁଝିଲି- ସେଇ ଲୋକଟା ତ ? ସେଟା ଦିହରେ ପଲେ ମାଉଁସ ନାହିଁ । ମୁଥଟେ ମାରିଦେଲେ ଚାରିଗଡା ଦେଇ ପଡିବ । ମୁଁ ବକ୍ସିଂ ଫକ୍ସିଂ କରୁଚି । ଏକ୍ସରସାଇଜ କରି ମସଲ୍ ଫସଲ୍ ସବୁ ତନ୍ଦୁରସ୍ତ କରି ରଖିଛି । ସେ ମୋଠୁଁ ବେଶୀ କାମ କରି ପାରିବ ? ଜମ୍ମା ପାରିବ ନାହିଁ ।

ଶୀଲା- ପାରିବେ କଣ ଏ ଭିତରେ କେତେ ଥର କରି ସାରିଲେଣି । ଆମ ଘର ଚଟାଣ କେମିତି ଚିକ୍ ଚିକ୍ କରୁଚି ଦେଖୁଛନ୍ତି ତ ? ସେଇ ନିଜେ ପୋଛା ପୋଛି କରିଦେଇଚନ୍ତି । ସେ ନିଜେ ପାଣିରେ ସାବୁନ ଫେଣ୍ଟି ଫିନାଇଲ ପକେଇ ଟର୍କିସ ତଉଲିଆ ଧରି-

ନାରୁ- ମୋତେ ବି ଗୋଟେ Chance ଦିଅନ୍ତୁ ନା ଶୀଲା ଦେବୀ ଦେଖିବେ ମୁଁ

କେମିତି ତାଠୁଁ ବି ବଢ଼ିଆ କାମ କରି ଦଉଚି । ଘର ପୋଛା ବାସନ ମଜା କଚ୍ଚା ସିଲେଇ ରନ୍ଧାବଢ଼ା ଯାହା ଆପଣ କହିବେ ସବୁ କାମ । ଆପଣ ଏଥର ଆଉ ସେଟାକୁ ଜମା ଘରେ ପୂରାନ୍ତୁ ନାହିଁ । ଆସିଲା ମାତ୍ରେ ଦୁଆରୁ ଦୁଆରୁ ନିକଲ କରି ଦିଅନ୍ତୁ ।

ଶୀଲା- କରି ଦିଅନ୍ତି ଯେ କଥାଟା କଣ କି ସେ ମୋତେ କାହିଁକି କେଜାଣି ଭାରି ଭଲ ପାଇଯାଇଚନ୍ତି ତ...

ନାରୁ- ମିଛ... ମିଛ । ଏକଦମ୍ ମିଛ । ଆପଣ ସରଳ- ହୃଦୟା ଦୟାଶୀଳା ମହିୟସୀ ମହିଳା ବୋଲି ତାକୁ ଚିହ୍ନିପାରୁ ନାହାନ୍ତି । ମୁଁ ପରା ସେଟାକୁ ଦେଖି ଦେଖି ଆସୁଛି ଦିତିନି ବର୍ଷ ହେଲାଣି । ସେଟା କେମିତିକା ଲୋକ ମୁଁ ଜାଣି ନାହିଁ ? ଦିଶୁଚି ଭାରି ନିରୀହ ନିରାମିଷ ପ୍ରାଣୀଟିଏ ପରି । ପ୍ରକୃତରେ କିନ୍ତୁ ଏକଦମ୍ dangerous ଲୋକ । ଆପଣ ତାକୁ ଜମା ବିଶ୍ୱାସ କରିବେ ନାହିଁ କି ଘର ଭିତରକୁ ପୂରେଇଦେବେ ନାହିଁ ।

ଶୀଲା- ସତରେ ? ମୁଁ ତ ଏତେ କଥା ଜାଣି ନ ଥିଲି ।

ନାରୁ- ଆପଣ ମହିୟସୀ ମହିଳା ଏମିତିକା ଛୋଟ ଲୋକଗୁଡ଼ାଙ୍କ କଥା ଜାଣିବେ କେମିତି ବା କି ଦୁଃଖରେ ? ଆପଣ ଜାଣିଛନ୍ତି ସେ ଲୋକଟା- ଛାଡ଼ନ୍ତୁ କହିଲେ କୁତ୍ସା ରଟନା କରୁଛି ବୋଲି ଆପଣ ଭାବିବେ ।

ଶୀଲା- ନାଇଁ... ନାଇଁ... ମୁଁ କିଛି ଭାବିବି ନାହିଁ । ଆପଣ କହନ୍ତୁ- କହନ୍ତୁ ।

ନାରୁ- ନାଇଁ ଥାଉ ।

ଶୀଲା- ନାରୁ ବାବୁ ! Please !

ନାରୁ- ଆପଣ ଜାଣିଚନ୍ତି ସେ ବଲାଙ୍ଗୀର ପାଖ ଗୋଟେ କୋଉ ଗାଁରେ ଥିଲା ବେଳେ କୁଆଡେ ଗୋଟେ କୋଉ ଝିଅକୁ ବାହା ହବ ବୋଲି କହି ଦେଉଥିଲା । ଏଠି ଆସି ଆପଣଙ୍କୁ ଦେଖି ଦେଲା ପରେ ତାକୁ ଆଉ କୁଆଡେ ଧରାଛୁଆଁ ଦଉନାହିଁ । ଲୁଚି ଲୁଚି ରହୁଚି । ଦେଖିବେ ଆଉ ମାସେ ଦିମାସ ପରେ ଏ ଘର ଛାଡ଼ି ଆଉ କୋଉ ଘରକୁ ପଳେଇବ ।

ଶୀଲା- Very bad ।

ନାରୁ- ଆଜ୍ଞା Very bad ନୁହେଁ Very very bad । ଗୋଟେ ଝିଅକୁ ଜବାବ ଦେଇ ଆଉ ଜଣେ ମହିୟସୀ ମହିଳାକୁ ମିଛ କଥା କହି ଭଣ୍ଡେଇବା- Very bad- ନୁହେଁ Very very bad ।

ଶୀଲା- ଠିକ୍ କଥା । Very very bad ।

ନାରୁ- ସେ ଲୋକଟା ଆଉ କଣ କରିଚି ଜାଣନ୍ତି ? ଅଫିସ ଲୋକଙ୍କ ଛଡ଼ା ଅନ୍ୟମାନଙ୍କଠୁଁ ବି କୁଆଡେ ହଜାର ହଜାର ଟଙ୍କା ଧାର୍ କରିଛି । ମାଗି ମାଗି

ନ ଦବାରୁ ସେମାନେ କୁଆଡେ ତା ମଟର ସାଇକଲ୍‌କୁ ଜବତ୍ କରିଚନ୍ତି । ଆହୁରି ବି ଅଛି ଯେ ଛାଡନ୍ତୁ- ଆମେ ବରଂ ଆମ କଥା କଥାବାର୍ତ୍ତା ହବା ।

ଶୀଲା- ଆମ କଥା ? କଣ ଯାଦୁର ମଲମ ନା... ?

ନାରୁ- ହେଁଃ ହେଁଃ ହେଁଃ...- ଆପଣ ଯୋଉ ଆରକଥା କହିଥିଲେ- ହେଁଃ ହେଁଃ ହେଁଃ... । - ମୁଁ ନିଜେ ରୂପା କିଣି ଘଣ୍ଟି ବାଛି ବଣିଆକୁ ସାମନାରେ ବସେଇ- ହେଁଃ ହେଁଃ ହେଁଃ...- ପାଞ୍ଚସରି ଚେନ ଲାଗିଚି ଭାରି ବଢ଼ିଆଁ ରୁଣୁଝୁଣୁ ରୁଣୁଝୁଣୁ ଶବ୍ଦ ହେଉଚି । ଆପଣଙ୍କୁ ନିଶ୍ଚୟ ଭଲ ଲାଗିବ ।

ଶୀଲା- କଣ ମୋ ପାଉଁଜି ତ ? କାହିଁ ଆଣିଚନ୍ତି ?

ନାରୁ- ହେଁଃ ହେଁଃ ହେଁଃ...- ଆଣିଥାନ୍ତି ଯେ- ହେଁଃ ହେଁଃ ହେଁଃ...- ଆଣିଦେବି ?

ଶୀଲା- ନାଇଁ ନାଇଁ ଥାଉ । ଆଜି ଏତେ ରାତିରେ କାହିଁକି ଆଉ କଷ୍ଟ କରିବେ ? ଆଉ ଦିନକୁ ଥାଉ ।

ନାରୁ- ନାଇଁ ନାଇଁ ଏଥିରେ ଆଉ କଷ୍ଟ କଣ ? ହେଁଃ... ହେଁଃ... ହେଁଃ...- ମୋତେ ବରଂ ଖୁସି ଲାଗିବ । ଯିବି ? ଆଣିଦେବି ?

ଶୀଲା- ହଉ ଯଦି ଆଣିବେ ତାହେଲେ ମୁଁ ପିନ୍ଧିବାବେଳେ ଆପଣ କିନ୍ତୁ ନିଜେ ମୋ ଆଗରେ ବସିବେ । ପାଞ୍ଚସରି ଚେନ । ନାନା ପ୍ରକାର ଘଣ୍ଟି ଫଣ୍ଟି ସେଥିରେ ଲାଗିଥିବ । ମୁଁ କେବେ ପାଉଁଜି ପିନ୍ଧିନାହିଁ । ଆପଣ ଟିକେ ମୋ ଆଗରେ ବସି ମୋତେ କହି କୁହି ନ ଦେଲେ ମୁଁ ସବୁ ଅଡୁଆ ତଡୁଆ କରି ପକେଇବି ।

ନାରୁ- ହେଁଃ ହେଁଃ ହେଁଃ... ହଉ ହଉ ମୁଁ ବସିବି ବସିବି- ହେଁଃ ହେଁଃ ହେଁଃ... କିନ୍ତୁ ଶୀଲା ଦେବୀ ମୁଁ କଣ କହୁଥିଲି କି ଆପଣ ଯଦି କିଛି ନ ଭାବନ୍ତି-

ଶୀଲା- କଣ କହୁନାହାଁନ୍ତି ?

ନାରୁ- ହେଁଃ... ହେଁଃ... ହେଁଃ... । ନାଇଁ ମାନେ ମାନେ ଆପଣ ଯଦି କିଛି ନ ଭାବନ୍ତି ମୁଁ ନିଜେ ଆପଣଙ୍କୁ...

ଶୀଲା- (ମଝିରେ) ମାନେ ଆପଣ ନିଜେ ମୋତେ ପିନ୍ଧେଇ ଦେବେ ! ନାଇଁ ନାଇଁ- ଆପଣ ନିଜେ ମୋ ପାଦ ଧରି ପିନ୍ଧେଇବେ ? ନାଇଁ- ନାଇଁ ମୋତେ ଭାରି ଲାଜ ମାଡିବ ।

ନାରୁ- ଆରେ ନା ନା ଏଥିରେ ଲାଜ ମାଡିବାର କଣ ଅଛି ! ଆପଣ ଗୋଟେ କଥା ଜାଣି ନାହାନ୍ତି- ମୁଁ ଆପଣଙ୍କ ପାଇଁ ସେ କାମଟା କରିଦେବି- ଏଥିରେ ଲାଜ କରିବାର କଣ ଅଛି ?

ଶୀଲା- ତଥାପି ଆପଣଙ୍କ ପରି ଜଣେ ଉଚ୍ଚଶିକ୍ଷିତ ସୁନ୍ଦର ଯୁବକ ମୋ ପରି ଗୋଟେ ନିହାତ ସାମାନ୍ୟ ସ୍ତ୍ରୀ ଲୋକର ପାଦ ଧରିବାଟା-

ନାରୁ- ଆରେ ନା ନା ଆପଣ ଜମା ବ୍ୟସ୍ତ ହେବେ ନାହିଁ । ଆଉ ହେଁଃ ହେଁଃ ହେଁଃ...-

ଆପଣ ତ ଜଣେ ସାମାନ୍ୟ ସ୍ତ୍ରୀଲୋକ ନୁହନ୍ତି । ଆପଣ ଜଣେ ବିଶିଷ୍ଟା ସୁନ୍ଦରୀ ଉଚ୍ଚଶିକ୍ଷିତା ଯୁବତୀ-

ଶୀଲା- ହଉ ଆପଣଙ୍କ ଇଚ୍ଛା । ଆପଣ ନିଜ ହାତରେ ଆପଣଙ୍କ ନିଜ ପାଉଁଜ- ଆଃ ! ମୋର କି ଅପୂର୍ବ ସୌଭାଗ୍ୟ ! ମୋତେ ସତରେ ଭାରି ଖୁସି ଲାଗୁଚି- ଆପଣ ମୋ ପାଦରେ ପାଉଁଜ ପିନ୍ଧେଇ ଦେବେ- ମୁଁ ତାକୁ ପିନ୍ଧି ଆପଣଙ୍କ ଆଗରେ ଚାଲିବି । ମୋ ପାଦରୁ ରୁଣୁଝୁଣୁ ଶବ୍ଦ ବାହାରୁଥିବ । ଆପଣ ମୋ ଆଗରେ ବସି ସେ ଶବ୍ଦକୁ ଶୁଣୁଥିବେ । ଆଃ ! (ହଠାତ୍ ଉଦ୍‌ଗ୍ରୀବତା ପ୍ରକାଶ କରି) ନାରୁବାବୁ ! ତାହେଲେ ଆପଣ ଏଥର ଯାନ୍ତୁ । ନେଇ ଆସନ୍ତୁ- Please- ପାଉଁଜ ପିନ୍ଧି ଆପଣଙ୍କ ଆଗରେ ଚାଲିବା ପାଇଁ ମୋ ମନ ବି ଭାରି ଉଚ୍ଚାଟ ହେଲାଣି । ତେବେ ନାରୁବାବୁ ! ଗୋଟେ କଥା ପଚାରିବି ?

ନାରୁ- ପଚାରୁ ନାହାନ୍ତି ? ପଚାରନ୍ତୁ ।

ଶୀଲା- ଆପଣ ତ ନିଜେ ପାଉଁଜ ପିନ୍ଧନ୍ତି ନାହିଁ । ଆପଣ ଏ ପାଉଁଜ ପିନ୍ଧା ବିଦ୍ୟାଟି କାହା ପାଖରୁ ଶିଖିଲେ ? ଆଗରୁ କଣ କେବେ କାହାକୁ ପାଉଁଜ ପିନ୍ଧେଇ ଥିଲେ ? (ଉଭୟେ ହସି ଉଠିଲେ) ନାରୁ ବାବୁ ଆପଣ ସତରେ ଜଣେ ଭାରି ସୁନ୍ଦର ରସିକ ଯୁବକ ଥାଉଛନ୍ତି । (ଉଭୟେ ହସିଲେ । ଶୀଳାର ଆବୃତ୍ତି) ଦୃଷ୍ଟିରୁ ଅନ୍ତର ହୋଇଲେ ନ ପାରେ ତୁମକୁ ଆଉ ମୁଁ ଦେଖି/ ତୁମ ଅପରୂପ ରୂପର ଚିନ୍ତାରେ ସବୁ ସୁଖ ଯାଏ ଶୁଖି/ ତୁମ ଚରଣର ରୁମୁଝୁମୁ ଯଦି ଯାଉଥାନ୍ତା ମୋତେ ଶୁଭି/ ମନ- ଅଗନାରେ ଦିଶୁଥାନ୍ତା ତୁମ ଚନ୍ଦ୍ରବଦନର ଛବି/ ତେଣୁ ପ୍ରିୟା ମୋର ବଢାଇ ଦିଅ ଗୋ ପାଦ/ ପାଉଁଜ ଦୁଇଟି ପିନ୍ଧାଇ ତୁମକୁ ପୂରାଏଁ ମୋ ମନସାଧ- (ଉଭୟେ ହସି ଉଠିଲେ) ।

ନାରୁ- Beautiful- really beautiful- ଶୀଲା ଦେବୀ ! ଆପଣ ନିଜେ ଲୁଚେଇ ଲୁଚେଇ କବିତା ଲେଖୁଚନ୍ତି ।

ଶୀଲା- (ହସି ହସି) ଏଥର କିନ୍ତୁ ଆପଣ କବିତା ଲେଖିବାର କଥା । କାହିଁକି ଜାଣନ୍ତି ? ପ୍ରେମରେ ପଡିଲେ ଲୋକମାନେ ଭାରି ସୁନ୍ଦର କବିତା ଲେଖିପାରନ୍ତି । ଆପଣ ନିଜେ ମୋ କବିତା ଆଉ ପାଉଁଜର ପ୍ରେମରେ ପଡିଗଲେଣି । ନୁହେଁ ? (ଉଭୟେ ହସି ଉଠିଲେ) ।

ନାରୁ- ଶୀଲା ଦେବୀ ! ଗୋଟେ କଥା ପଚାରିବି ?

ଶୀଲା- ପଚାରୁ ନାହାନ୍ତି ?

ନାରୁ- ଆପଣ ଯେ ଏତେ ଶୀଘ୍ର ଏମିତି କବିତା ଲେଖି ଦଉଛନ୍ତି ଆପଣ କଣ... ?

ଶୀଲା- (ପୂରଣ କରି) କାହା ପ୍ରେମରେ ପଡି ଯାଇଛନ୍ତି ? ଏୟାତ ? ସେ କଥା କଣ କହିବା ଦରକାର ?

ନାରୁ- (ଭାରି ଖୁସି) ହେଁ... ହେଁ... ହେଁ... । (ଶୀଲା ହସି ଉଠିଲା)

ଶଙ୍ଖ- (କବାଟରେ ଟୋକା ମାରି ଚାପା ମୋଲାୟମ ସ୍ୱରରେ) ଶୀଲା ଦେବୀ ! (ଉଭୟେ ଅଟକି ଯାଇ ପରସ୍ପରକୁ ଚାହିଁଲେ) ।

ଶୀଲା- (ଚାପା ସ୍ୱରରେ) କିଏ ? କିଏ ଡାକିଲା ? ନାରୁ ବାବୁ ! ଆପଣ ଡାକିଲେ ?

ନାରୁ- ନାଇଁତ ।

ଶୀଲା- ଆପଣଙ୍କ ଛଡା ଆଉ କେହି ତ ମୋତେ ଏତେ ମୋଲାୟମ କରି ଡାକନ୍ତି ନାହିଁ । ତାହେଲେ ଆଉ କିଏ ଡାକିଲା ?

ଶଙ୍ଖ- (ବାହାରେ ପୂର୍ବ ପରି) ଶୀଲା ଦେବୀ !

ଶୀଲା- ହେଇ ହେଇ ପୁଣି ଥରେ ଡାକିଲାଣି । ଆପଣ ବସିଥାନ୍ତୁ । ମୁଁ ଟିକେ ଖୋଲି ଦେଖେଁ କିଏ- (କବାଟ ପାଖକୁ ଯିବାକୁ ଉଦ୍ୟତ ହେଲା) ।

ନାରୁ- (ଶଙ୍କିତ) ନାଇଁ ନାଇଁ ନାଇଁ ନାଇଁ- ଜମା ଖୋଲିବେ ନାହିଁ- ଜମା ଖୋଲିବେ ନାହିଁ । ମୋତେ ଲାଗୁଚି ଏଟା ସେଇ ରାସ୍କେଲ ବଙ୍କାରୀ ଲଫଙ୍ଗା ବିଲ୍ଲକୁଆ । ମୋତେ ମିଛରେ କହିଦେଲା ତିନିଟା ବେଳେ ପୁରୀ ଯିବି । ପୁରୀ ନ ଯାଇ- ରାସ୍କେଲ ! ଶୀଲା ଦେବୀ ! ଜମା ଖୋଲିବେ ନାହିଁ ।

ଶଙ୍ଖ- (ବାହାରେ ପୂର୍ବ ପରି) ଶୀଲା ଦେବୀ ! ମୁଁ ପରା ଶଙ୍ଖ । ଶଙ୍ଖ ସାହୁ ! ଖୋଲନ୍ତୁ । Please !

ନାରୁ- (ଦାନ୍ତ ଚାପି) ଚୋପ୍ ବେ ! ଶଙ୍ଖ ସାହୁ ! ଶୀଲା ଦେବୀ ! ଜମା ଖୋଲିବେ ନାହିଁଟି । ଯେତେ ଡାକିଲେ ଡାକୁ ଥାଉ । ଭାରି dangerous ଲୋକ । ତାକୁ ଜମା ବିଶ୍ୱାସ ନାହିଁ । ଆମର କଥା ଜମା ଆରମ୍ଭ ହେଇନାହିଁ । ମୁଁ ମୋ ରୁମ୍‌କୁ ଯାଇ ପାଉଁଜ ଆଣିବି- ଆପଣଙ୍କ ପାଦରେ ପିନ୍ଧେଇ ଦେବି- ଆପଣ ଚାଲି ଚାଲି ରୁଣୁଝୁଣୁ ଶବ୍ଦଟା ଠିକ୍‌ରେ ବାହାରୁଚି କି ନାହିଁ ଦେଖିବେ- ଆମର ଖୋଲ୍‌କୀ ମାର୍କା ଯାତ୍ରାର ମଜମ କଥା ବି ପଡିବ । କେତେ କଥା ଅଛି । ସେଟାକୁ ଜମା ଘର ଘର ଭିତରକୁ ପୂରାନ୍ତୁ ନାହିଁ ।

ଶଙ୍ଖ- (ବାହାରୁ) ଶୀଲା ଦେବୀ ! ମୁଁ ପରା ଶଙ୍ଖଟି ପରି ଆପଣଙ୍କ ଦୁଆରେ ବାଜୁଚି ।

ନାରୁ- ଚୋଓପ୍ ! ଦେବି ଯେ ଏକ ବାଇଶ ପଳିଆ ମୁଥ କସି ତୋ ନାକରେ ଗୋଟେ ଘୋର ଦୁର୍ଘଟଣା ହେଇଯିବ । ଶଙ୍ଖ ପରି ବାଜୁଥିବୁ । କହିଲା ଶଙ୍ଖ ପରି ବାଜୁଚି ! ଇଡିୟଟ୍ !

ଶୀଲା- (ହାତ ଦେଖେଇ) ହାଁ ହାଁ ପାଟି କରନ୍ତୁ ନାହିଁ- ପାଟି କରନ୍ତୁ ନାହିଁ ଶଙ୍ଖବାବୁ ଯଦି ଶୁଣି ପକାନ୍ତି ହଲ୍ଲା କରିଦେବେ ।

ନାରୁ- କନ୍ତୁ କଣ କରୁଚି । ଆପଣ ଜମା ଡରନ୍ତୁ ନାହିଁ । ମୁଁ ଅଛି ଦେଖାଯିବ ।

ଶୀଲା- ନାଇଁ ନାଇଁ ନାଇଁ- ଝମେଲା ହେଇଯିବ ।

ନାରୁ- ତାହେଲେ ଗୋଟେ କାମ କରନ୍ତୁ । କବାଟକୁ ଅଳ୍ପ ଟିକେ ଖୋଲି ଦେଇ ଜୋର ପାଟି କରି କହି ଦିଅନ୍ତୁ ମୋ ନାଁରେ ତ ବାହାରେ ଏତେ କୁତ୍ସା ରଟନା କରୁଚନ୍ତି- ରାତି ଅଧରେ ଆସି କାହିଁକି କଅଁଳେଇ କରି ଡାକ ଦଉଚନ୍ତି । ଆପଣଙ୍କ ଉଦ୍ଦେଶ୍ୟ ମନ୍ଦ । ଆପଣ ସାଙ୍ଗେ ସାଙ୍ଗେ ଯିବେ ନା ମୁଁ ହଲ୍ଲା କରିବି ପୋଲିସକୁ ଫୋନ୍ କରିବି ? ଦେଖିବେ ଆପଣଙ୍କ କଥା ନ ସରୁଣୁ ଲାଙ୍ଗୁଡ ଜାକି କୁଆଡେ ଯଦି ନାଇଁ କୁଆଡେ ପାର୍ ହେଇ ନଯାଇଚି । (ନିଶବ୍ଦରେ ହସିଲା) ।

ଶୀଲା- ନାଇଁ ନାଇଁ ବାବା ତଥାପି ଯଦି ଜୋର କରି ପଶିଆସିଲେ ?

ନାରୁ- ମୁଁ ତା ଭିତରେ ଯା ଭିତରେ କୋଉଠି ଲୁଚି ଯାଇ ନଥିବି ?

ଶୀଲା- ନା... ନା... ନା... ନା- ଜମା ସେ ଭୁଲ୍ କରିବେ ନାହିଁ- ଜମା ସେ ଭୁଲ୍ କରିବେ ନାହିଁ । ଶଙ୍ଖ ବାବୁ ଯଦି ଆପଣଙ୍କୁ ଧରି ପକେଇଲେ ତାହେଲେ କେତେ ବଡ ଗୋଟେ କେଲେଙ୍କାରି କାଣ୍ଡ ହେଇଯିବ ବୁଝିପାରୁଚନ୍ତି ? କାଲି ସକାଳେ ଖବର କାଗଜରେ ବାହାରିଯିବ ଅମୁକ ଅଞ୍ଚଳରେ ଶୀଲା ଦେବୀ ନାମକ ଜଣେ ଯୁବତୀ ଓ ନାରୁ ଷଡ଼ଙ୍ଗୀ ନାମକ ଜଣେ ଯୁବକ ଏକାଠି ଥିଲା ବେଳେ ଧରା ପଡିଚନ୍ତି । My God !

ଶଙ୍ଖ- (ବାହାରୁ) ଶୀଲା ଦେବୀ ! Please -ଭାରି ଶୀତ ।

ଶୀଲା- ହେଇ... ହେଇ ପୁଣି ଡାକିଲେଣି । ନାରୁବାବୁ ! ଆପଣ ଗୋଟେ କାମ କରନ୍ତୁ । ଆଗପଟେ ତ ଯାଇ ହବ ନାହିଁ । ଆପଣ ବରଂ ଘର ପଛପଟ ପାଚିରୀ ଡେଇଁ ପଳାନ୍ତୁ ।

ନାରୁ- ପାଚିରୀ ଡେଇଁ ପଳେଇବି ? ଶୀଲା ଦେବୀ । ସେଟା ପରା ସଫେଇ ଲେନ୍‌ଟା । ଖାଲି ପଚା କାଦୁଅ ପରିବା ଚୋପା କାଚ ଗୁଣ୍ଡ ଚିରା କନା କୁକୁର ଗୁହ । ଯୋଉ ପଚା ଗନ୍ଧ ହଉଚି-

ଶୀଲା- ଜାଣିଚି ଯେ କଣ ଆଉ କରାଯିବ ? ଅବସ୍ଥା ଯେମିତି ଗୁରୁତର ହେଲାଣି-

ନାରୁ- ସେ ସଫେଇ ଲେନ୍ କାଦୁଅରେ ପଡିଗଲେ ମୋ ଅବସ୍ଥା ବି ଗୁରୁତର ହେଇଯିବ ଶୀଲା ଦେବୀ ।

ଶଙ୍ଖ- (ବାହାରେ) ଶୀଲା ଦେବୀ । ଭାରି ଶୀତ । ଦୟା- ଦୟା-

ନାରୁ- ମର୍ ମର୍ ସେଇ ଶୀତରେ ମର୍-

ଶୀଲା- ନାରୁବାବୁ ! ଆଉ ଜମା ଡେରି କରନ୍ତୁ ନାହିଁ- Please-

ନାରୁ- (ଦବିଲା ସ୍ୱରରେ) ଯିବି ? ଯା ଭିତରେ କିଛି ସୁବିଧା ହେଇ ପାରିବନାହିଁ ?

ଶୀଲା- ନାରୁବାବୁ ! Please- please-

ନାରୁ- ହଉ- ଯାଉଚି । ହେଲେ ଶୀଲାଦେବୀ ଏକଦମ୍ ଲଟର ପଟର ହେଇଯିବି- ଏକଦମ୍ ଲଟର ପଟର ହେଇଯିବ । (ଟିକେ ଜୋର୍ ଦେଇ) ଆପଣ କିନ୍ତୁ ସେ ସ୍କାଉଣ୍ଡ୍ରେଲଟାକୁ ଜମା ଛାଡିବେ ନାହିଁ । ଗୋଟେ ଜୋର୍ ଧମକ ଦେଇ ଘଉଡେଇ ଦେବେ ନ ହେଲେ ତା ମୁଣ୍ଡକୁ ଏମତି ଜୋର୍‌ରେ ଝୁଙ୍କେଇ ଦେବେ ଯେ ରାସ୍କେଲ ଏକଦମ୍ ଚନ୍ଦା ହେଇଯିବ । ହଉ ରହ ରହରେ ରାସ୍କେଲ ବିଲକୁଆ । ମୁଁ ଏଠୁ ବାହାରିଲା ପରେ ତୋର ଏମିତି ଏକ ଦୁର୍ଘଟଣା କରି ଦେବି ଯେ-

ଶୀଲା- ନାରୁବାବୁ ! Please ଜଲ୍‌ଦି ।

ନାରୁ- ଆଜ୍ଞା ଯାଉଚି ଯାଉଚି । ପ୍ରଭୁ ହେ ! ଏ ଘୋର ଶୀତ ରାତିଟାରେ ତମେ ଖାଲି ମୋରି ଭାଗ୍ୟରେ ଏଡେ ସୁନ୍ଦର ବାରୁଣୀ ସ୍ନାନ ଯୋଗଟିଏ ରଖିଥିଲ ? ପ୍ରଭୁ ! ଦୟାମୟ- (ଚାଲିଗଲା)

ଶଙ୍ଖ- (ବାହାରେ) ଶୀଲାଦେବୀ ! ଦୟା- ଦୟା-

ଶୀଲା- (ଯାଇ ଖୋଲି ଦେଇ) ଆରେ ? ଶଙ୍ଖ ବାବୁ- ଆପଣ ? ଆପଣ କେତେବେଳୁ ଆସିଲେଣି ? ଆସନ୍ତୁ ଆସନ୍ତୁ-

ଶଙ୍ଖ- (ଭିତରକୁ ଆସୁ ଆସୁ) ଶୀଲା ଦେବୀ ! ଗଲାଣି ନା ଯା ଭିତରେ କୋଉଠି ଲୁଚିଚି ?

ଶୀଲା- ନାଇଁ... ନାଇଁ... ଗଲେଣି ।

ଶଙ୍ଖ- ଗଲାଣି ? ସେଇ ବାଟେଟି ? ଠିକ୍ ହେଇଚି । ତାକୁ ଠିକ୍ ହେଇଚି । ଆମର ଗୋଟେ କେଡେ ସୁନ୍ଦର କଥାବାର୍ତ୍ତା ଚାଲିଥିଲା । ତା ଭିତରେ ବୁଲାରି ଷଣ୍ଢ ପରି ପଶି ଆସି- ଶୀଲା ଦେବୀ ! ତଥାପି ସେଟାକୁ ବିଶ୍ୱାସ ନାହିଁ । ରୁହନ୍ତୁ ମୁଁ କବାଟଟାକୁ ବନ୍ଦ କରିଦିଏଁ । (କବାଟ ଭିତରୁ ବନ୍ଦ କରି ଦେଲା । ଉଭୟେ ଆସି ବସିଲେ) ।

ଶୀଲା- କିନ୍ତୁ ଶଙ୍ଖ ବାବୁ ଆପଣ ବି ତ ସେଇ ପଛ ବାଟେ ଯାଇଥିଲେ । କିନ୍ତୁ ଆପଣ କେମିତି ଏକଦମ୍ ତନ୍‌ଛନ୍ ଦିଶୁଛନ୍ତି । ସେ ସଫେଇ ଲେନ୍‌ରେ କଣ ଆଉ କାଦୁଅ ପାଦୁଅ ନାହିଁକି ?

ଶଙ୍ଖ- ଆଜ୍ଞା ଭର୍ତ୍ତି ହେଇଚି । ଖାଲି ପାଣି ପଚ ପଚ ପୋଚରା କାଦୁଅ । ଛିଣ୍ଡା କାଗଜ ଛିଣ୍ଡା କନା ପରିବା ଚୋପା ପଲିଥିନ୍ କୁକୁର ଗୁହ ଅଇଣ୍ଠା ପତ୍ର ପଡି ସବୁ ଏକାକାର । ମୁଁ ମୋ ରୁମ୍‌କୁ ଯାଇ ଭଲ କରି ଗାଧେଇ ପାଧେଇ ସେଣ୍ଟ୍ ଫେଣ୍ଟ୍ ପକେଇଚି ବୋଲି । ନ ହେଲେ ଦିହରୁ ଯୋଉ ପୋଚରା ଗନ୍ଧ ବାହାରୁ ଥିଲା- ମହାଶୟ ଏଇନା ସେଇ ମଧୁର ଗନ୍ଧ ସମୁଦ୍ରରେ ମହା ଆନନ୍ଦରେ ଜଳ କେଳି କରୁଥିବେ । (ହସିଲା)

ଶୀଲା- ଆଜ୍ଞେ... ଆଜ୍ଞେ । କିନ୍ତୁ ଶଙ୍ଖ ବାବୁ ଆପଣ ଏତେ ରାତିରେ କଷ୍ଟ କରି ଆଉ ଏଠିକି ଆସିଲେ କାହିଁକି ? ଆପଣ ବରଂ ଶୀଘ୍ର ଆପଣଙ୍କ ରୁମ୍‌କୁ ଚାଲିଯାନ୍ତୁ । ନାନୁ ବାବୁ ଆପଣଙ୍କ ଉପରେ ଯେମିତି ରାଗିଚନ୍ତି ଆପଣ ଯଦି ତାଙ୍କ ହାବୁଡରେ ପଡିଯାନ୍ତି...

ଶଙ୍ଖ- ସେ ମୋଟ ଜଳହସ୍ତୀ ଯେତିକି ଓଜନ ହେଇଛି ସେ ତ ସେ ପଙ୍କ ସମୁଦ୍ର ଭିତରେ କୁଆଡେ ବୁଡିଯାଇ ସାରିବଣି । ତା ଭିତରୁ ଉଠୁ ଉଠୁ ତ ତାକୁ ଯୁଗେ ଲାଗିଯିବ । ସେ ଆଉ ମୋତେ ଧରିବ କଣ ? ଆପଣ ତାକୁ ଭଲ ପାନେଟିଏ ଦେଇଚନ୍ତି । ବହୁତ ଝମେଲା କରୁଥିଲା । ଆଉ କରିବାକୁ ସାହସ କରିବ ନାହିଁ । ଆମେ କିଛି ସମୟ ନିଶ୍ଚିନ୍ତରେ ବସି ଗପ କରିପାରିବା । ଶୀଲା ଦେବୀ । ହେଁଃ ହେଁଃ ହେଁଃ... ମୁଁ ଏଇଟା ଆଣିଥିଲି- (ଗୋଟେ ପ୍ୟାକେଟ୍ ବଢାଇଲା) ।

ଶୀଲା- କଣ ଅଛି ସେଥିରେ ? କିଛି Presentation ? ନା ବାବା ନା ମୋ ପାଖରେ ଏତେ Presentation ହେଇଗଲାଣି ଯେ...

ଶଙ୍ଖ- ନା ଶୀଲା ଦେବୀ Presentation ନୁହେଁ । ଚିଠି ।

ଶୀଲ:- ଚିଠି ? କି ଚିଠି ? କାହାର ? କିଏ ଦେଇଚି ?

ଶଙ୍ଖ- (ସଲ୍ଲଜ ହସ) ହେଁଃ ହେଁଃ ହେଁଃ... ନାଇଁ ମାନେ ଆଜି ଆମେ କଥା ହଉ ନ ଥିଲେ...

ଶୀଲା- ଓହୋ ହୋ ! ସେଇ ଚିଠି ? ଏ ସବୁଯାକ ? ମୋ ପାଖକୁ ? How nice-how nice !

ଶଙ୍ଖ- ହେଁଃ... ହେଁଃ... ହେଁ- ଆଉ କିଛି ଥିଲା ଯେ ତରବରିଆରେ ଚାଲି ଆସିଲି ତ ଛାଡି ଆସିଲି । ଆଣିଦେବି ?

ଶୀଲା- ନା... ନା... ଶଙ୍ଖ ବାବୁ ଆଉ ଆଣିବା ଦରକାର ନାହିଁ । ଆଗ ଏତକ ପଢ଼ି ସାରେଁ । ଆପଣଙ୍କର ଏଇ ପ୍ରେମଚିଟା ଏକା କେଜିଏ କି ଦେଢ଼ କେଜି ହବ । (ହସିଲା । ଶଙ୍ଖ ମଧ ହସିଲା) କିନ୍ତୁ ଶଙ୍ଖ ବାବୁ ! ଆପଣ ତ ମୋତେ ଏତେ ଭଲ ପାନ୍ତି ନାହିଁ କି ଏ ସବୁ ଚିଠି ମୋ ପାଇଁ ଲେଖି ନାହାନ୍ତି । ଯାକୁ ସବୁ ନିଏ ଆଉ କାହା ପାଇଁ ଲେଖିଛନ୍ତି । କିଏ ସେ ପରମ ଭାଗ୍ୟବତୀ ସୁନ୍ଦରୀ- ତାଙ୍କ କଥା ମୋତେ ଟିକେ କହିବେ ? ଭାରି ଈର୍ଷା ହଉଚି ।

ଶଙ୍ଖ- ନାଇଁ... ନାଇଁ... ଶୀଲା ଦେବୀ ମୋତେ ବିଶ୍ୱାସ କରନ୍ତୁ- ଏ ସବୁ ଚିଠି କେବଳ ଆପଣଙ୍କ ପାଇଁ । କେବଳ ଆପଣଙ୍କ ପାଇଁ ।

ଶୀଲା- ବିଶ୍ୱାସ ହେଉ ନାହିଁ । ସତରେ ଆପଣ ମୋତେ ଏତେ ଭଲ ପାନ୍ତି ?

ଶଙ୍ଖ- ହେଁ... ହେଁ... ହେଁ... ଶୀଲା ଦେବୀ ! ମୁଁ- ମୁଁ ଆପଣଙ୍କୁ ଯେ କେତେ...

ଶୀଲା- ସତରେ ? ଶୀଲା ବାବୁ- Sorry sorry ଶଙ୍ଖ ବାବୁ ! ମୋତେ ଏତେ ଖୁସିଲାଗୁଚି ଯେ ମୋ କଥା ସବୁ ବାଉଳା ଚାଉଳା ହେଇଯାଉଚି । ଶଙ୍ଖ ବାବୁ ! ମୁଁ ନିଶ୍ଚେ ଏ ଚିଠି ସବୁ ଏଇଠି ଆପଣଙ୍କ ଆଗରେ ବସି ପଢ଼ିବି । ଆପଣ ଯା ଭିତରେ କେତେ ପ୍ରେମ କଥା ଲେଖି ଥିବେ । ମନ ଭାରି ଉଚ୍ଚାଟ ହଉଚି ପଢିବାକୁ । ପଢିବି

ଶଙ୍ଖ- ହେଁ ହେଁ ହେଁ...

ଶୀଲା- ନାଇଁ ଥାଉ ମୋତେ ଲାଜ ମାଡିବ । ଏତେ ରାତି ହେଲାଣି । ଆପଣଙ୍କୁ ବି କଷ୍ଟ ହବ ।

ଶଙ୍ଖ- ହେଁ... ହେଁ... ହେଁ... ନାଇଁ... ନାଇଁ... କିଛି କଷ୍ଟ ନାହିଁ- କିଛି କଷ୍ଟ ନାହିଁ । ଆପଣ ପଢନ୍ତୁ ।

ଶୀଲା- ପଢିବି ? ନାଇଁ ଥାଉ । ଲାଜ ମାଡୁଚି ।

ଶଙ୍ଖ- ହେଁ... ହେଁ... ହେଁ...

ଶୀଲା- ହେଁ... ହେଁ... ହେଁ...

ଶଙ୍ଖ- ହେଁ... ହେଁ... ହେଁ... ପଢିବେ ନାହିଁ ?

ଶୀଲା- ହେଁ... ହେଁ... ହେଁ- ନାଇଁ ଥାଉ କାଲି ପଢିବି ।

ଶଙ୍ଖ- ହେଁ... ହେଁ... ମୁଁ ଆସିବି ?

ଶୀଲା- ନାଇଁ... ନାଇଁ... ଲାଜ ମାଡିବ ।

ଶଙ୍ଖ- ନାଇଁ- ନାଇଁ ଲାଜ ମାଡିବ ନାହିଁ । ଭଲ ଲାଗିବ । ଆସିବି ?

ଶୀଲା- (ସଲ୍ଲଜ ସ୍ୱରରେ) ନାଇଁ ନାଇଁ ଆପଣଙ୍କ ଆଗରେ ପଢିବାକୁ ଲାଜ ମାଡିବ ।

ଶଙ୍ଖ- ଶୀଲାଦେବୀ ! Please- please-

ନାରୁ- (ହଠାତ୍ ବାହାରେ କିଞ୍ଚିତ ଉଚ୍ଚ ସ୍ୱରରେ) ଶୀଲା ଦେବୀ !

ଶଙ୍ଖ- (ଅଟକି ଯାଇ ଶଙ୍କିତ ବିସ୍ମୟରେ) କିଏ ? କିଏ ଡାକୁଚି ?

ନାରୁ- (ବାହାରେ) ଶୀଲା ଦେବୀ ! ମୁଁ ନାରୁ । ନାରୁ ଷଡ଼ଙ୍ଗୀ । ଖୋଲନ୍ତୁ । Please ! ଜଲ୍‌ଦି ।

ଶଙ୍ଖ- ଏଁ ! ନାରୁ ଷଡ଼ଙ୍ଗୀ ? ଏଟା ପୁଣି କଣ ଆସିଲାଣି ! ଶୀଲା ଦେବୀ ! ଜମା ଖୋଲିବେ ନାହିଁ । ସେଟା ପଙ୍କ କାଦୁଅରେ ଲଟର ପଟର ହେଉଥିବ । ଗନ୍ଧ ଛାଡୁଥିବ ଯେ କେଜାଣି କେତେ । ଜମ୍ମା ଖୋଲନ୍ତୁ ନାହିଁ ।

ନାରୁ- (ବାହାରେ) ଶୀଲା ଦେବୀ ! ସେ ହାରାମଜାଦାଟା ତା ଭିତରେ ଅଛି ନା କୁଆଡେ ଗଲାଣି ?

ଶଙ୍ଖ- (ଫିସ୍ ଫିସ ସ୍ୱରରେ) ଶୀଲା ଦେବୀ ! କହି ଦିଅନ୍ତୁ ଗଲାଣି ।

ନାରୁ- (ବାହାରେ) ଶୀଲା ଦେବୀ ! ମୁଁ ଏଇଠି ବସିଛି । ସେଟା ଯଦି ଭିତରେ ଅଛି ତାହେଲେ ସେ ସେଇ ପାଚିରୀ ଡେଇଁ ପୁଣି ସେ ସପେଇ ଲେନ୍‌ରେ ଗାଧଉ ନହେଲେ ମୋ ପାଖକୁ ଆସୁ- ମୁଁ ତାର ଗୋଟେ ଦୁର୍ଘଟଣା କରିଦିଏଁ ।

ଶୀଲା- ଶଙ୍ଖ ବାବୁ !

ଶଙ୍ଖ- (ଶଙ୍କିତ) ଶୁଣିଲି ।

ଶୀଲା- ଆଉ ଡେରି କରନ୍ତୁ ନାହିଁ ।

ଶଙ୍ଖ- ଶୀଲାଦେବୀ ! ଆଉ ପାରିବି ନାହିଁ ଶୀଲା ଦେବୀ ଥରକରେ ଅଣ୍ଡା ଆଣ୍ଠୁ ଙ୍କଁ ଙ୍କଁ ଡାକୁଚି । ଆଉ କ୍ଷମା ପାରିବି ନାହିଁ । ଶୀଲା ଦେବୀ ! ଦୟା କରନ୍ତୁ- Please- please- କହି ଦିଅନ୍ତୁ ଗଲାଣି ।

ଶୀଲା- ନାଇଁ... ନାଇଁ... ଶଙ୍ଖ ବାବୁ କଥାଟା ଆହୁରି ଗୋଳମାଳିଆ ହେଇଯିବ ସେ ଯଦି କହନ୍ତି କବାଟ ଖୋଲନ୍ତୁ ମୁଁ ଦେଖେଁ- ତା ହେଲେ ? ତାଙ୍କ ସ୍ୱର କେମିତି କଡା କଡା ଶୁଭୁଚି ଶୁଣୁଚନ୍ତି ତ ?

ଶଙ୍ଖ- ଶୀଲା ଦେବୀ ! ଦୟା- ଦୟା- Kindness !

ନାରୁ- (ବାହାରେ) ଶୀଲା ଦେବୀ ! ମୁଁ ଏଇଠି ଆପଣଙ୍କ ବାରଣ୍ଡାରେ ବସିଚି ।

ଶୀଲା- ଶଙ୍ଖ ବାବୁ ! ଶୁଣିଲେ ତ ?

ଶଙ୍ଖ- ଶୁଣିଲି ।

ଶୀଲା- ଆଉ ତାହେଲେ ଡେରି କରୁଚନ୍ତି କାହିଁକି ?

ଶଙ୍ଖ- ଶୀଲା ଦେବୀ ! ଗୋଡହାତ ଭାଙ୍ଗି ପଡିବି । କ୍ଷମା ଆଦାୟ ହେବି ନାହିଁ ।

ଶୀଲା- ଶଙ୍ଖ ବାବୁ ! Please !

ଶଙ୍ଖ- ହଉ ଯାଉଚି । ହରିହରି ହରିହରି- ମା ସମଲେଇ ମା ବରୁଣେଇ ମା ଲୋ- କେମିତି ଏ ଅସାଧ ସାଧନ କରିବି ଲୋ ମା ? ସେ ପଟେ ଘୋର ବିପଦ । ଏପଟେ ଅକାତକାତ ସମୁଦ୍ର- ବୁଡିବାଟି ସାର । ହରିହରି ହରିହରି- (ଚାଲିଗଲା) ।

ନାରୁ- (ବାହାରୁ) ଶୀଲା ଦେବୀ ! ଶୀଲା ଦେବୀ ! ଧୁତ୍ ଡେରି । ଶୀଲା ଦେବୀ ତ କିଛି କହୁନାହାନ୍ତି । ସେ ସ୍କାଉଣ୍ଡ୍ରେଲଟା କଣ କିଛି ଗଣ୍ଡଗୋଳ କରିଦେଲା ନା କଣ ? (କବାଟରେ ଠକ୍ ଠକ୍ କରି) ଶୀଲା ଦେବୀ ! ଶୀଲା ଦେବୀ !

ଶୀଲା- ଖୋଲୁଚି- ଖୋଲୁଚି (ଖୋଲି ଦେଲା) ଆରେ ନାରୁ ବାବୁ ? ଆପଣ ପୁଣି ଥରେ ? ଆପଣଙ୍କ ପେଣ୍ଟଜାମା ଏମିତି କଳା କଳା ଦିଶୁଚି । ଇସ୍ ! କି ଗନ୍ଧ !

ନାରୁ- (କିଞ୍ଚିତ ଉଗ୍ରସ୍ୱରରେ) ଅଛି ଯଦି ଡାକନ୍ତୁ ତାକୁ ଏଠିକି । ମୁଁ ତାକୁ ଗୋଟେ ପ୍ରେମ ଆଲିଙ୍ଗନଟେ କରିଦିଏଁ । ବାସନା ବାହାରି ଯାଉଚି ।

ଶୀଲା- ଶଙ୍ଖ ବାବୁ ତ ଗଲେଣି ।

ନାରୁ- ଗଲାଣି ? Sure ? ସେଇ ବାଟେ ତ ? ହଉ ଠିକ୍ ଅଛି । ମୁଁ ଯାଉଚି ଦେଖୁଚି କୁଆଡେ ଗଲା । ରହରେ ଶଙ୍ଖ ସାହୁ ବିଲକୁଆ ! କୁଆଡେ ତୁ ଯିବୁ ଦେଖୁଚି । ତତେ ଯଦି ସେଇ ପୋଚରା ପଙ୍କରେ ଦଣ୍ଡ ଥର ଘୋଷାରି ନ ଦେଉଚି- (ଚାଲିଗଲା)

ଶୀଲା- (କବାଟ ବନ୍ଦ କରି ଦେଲା) ।

<u>ଷଷ୍ଠ</u>

(ସେଇ ରାତିରେ ପ୍ରାୟ ଘଣ୍ଟାଏ ପରେ । ବୀରେଶ୍ୱର ଦାସଙ୍କ ବଗିଚା ପାଚେରୀକୁ ଲାଗି ଗୋଟିଏ ନିଛାଟିଆ ଯାଗାରେ ଚାରିପାଞ୍ଚଟି ଗଛ । ଯାଗାଟି ଅନ୍ଧାର । ସେଇ ଅନ୍ଧାର ଭିତରେ ଶଙ୍ଖ ସାହୁ ଚୁପ୍‌ଚାପ୍ ଛିଡା ହୋଇଛି । ଟର୍ଚ୍ଚ ଧରି ରତ୍ନାକର କାହାକୁ ଖୋଜିଲା ପରି ବୁଲୁଛି । ହାତରେ ଠେଙ୍ଗା)

ରତ୍ନା- (ଟର୍ଚ୍ଚଟା ହଠାତ୍ ଶଙ୍ଖ ଉପରେ ପଡିଗଲା ମାତ୍ରେ ସେ ଲୁଚି ଯିବାର ଚେଷ୍ଟା କଲା । ଟିକେ ଉଚ୍ଚ ସ୍ୱରରେ) କିଏ ? କିଏ ସେଠି ଅନ୍ଧାରରେ ଛିଡା ହେଉଚି ? କିଏ ? କହୁଚୁ ନା ଦେଖିବୁ ପାଟି କରି ସମସ୍ତଙ୍କୁ ଡାକିବି ?

ଶଙ୍ଖ- (ଚାପା ଓ ଶଙ୍କିତ ସ୍ୱରରେ) ରତ୍ନାକର ! ମୁଁ ।

ରତ୍ନା- (ସ୍ୱର ଚିହ୍ନିପାରି ପାଖକୁ ଆସି) ଆରେ ଶଙ୍ଖ ବାବୁ- ଆପଣ ? ମୁଁ ଚୋର ଫୋର ଭାବି ଏଇନା ପାଟି କରିବାକୁ ଯାଉଥିଲି । ହେଲେ ଆପଣ ଏତେ ରାତିରେ ଏ ଗଛ ମୂଳଟାରେ ଅନ୍ଧାରରେ ଏମିତି ଛିଡା ହେଇଚନ୍ତି କାହିଁକି ?

ଶଙ୍ଖ- (କିଛିତ ରୁଷ୍ଟ ଭାବ ରହିଛି) ହେଇଚି ତ ହେଉଚି । ତୋର କଣ ଅସୁବିଧା ? ତୁ ତୋ କାମରେ ଯାଉନଉଁ ?

ରତ୍ନା- ଇସ୍ ! କି ଗନ୍ଧ ! କୋଉଠୁ ଏମିତି ଗନ୍ଧ ଆସୁଚି ? ଏଠି କଣ ଗୋଟେ ପଚିଚି ନା କଣ ? ଶଙ୍ଖ ବାବୁ ! ଆପଣଙ୍କ ଦିହ ହାତ ଏମିତି କଳା କଳା ଦିଶୁଚି କାହିଁକି ? ଦିହରେ ସେ ଗୁଡା କଣ ଲାଗିଚି ? କାଦୁଅ ପାଦୁଅ ନା ଅନ୍ୟ କିଛି ?

ଶଙ୍ଖ- ସେ କିଛି ନୁହେଁ । ତୁ ଗଲୁ- ଯା । ଓହୋ ! ଟର୍ଚ୍ଚଟାକୁ ସେମିତି ମିଲ୍ ମିଲ୍ କରୁଚୁ କାହିଁକି ?

ରତ୍ନା- ହଉ ହେଲା । ଆଉ କରିବି ନାହିଁ । ହେଲେ ଆପଣଙ୍କର ଏ ଅବସ୍ଥା କେମିତି ହେଲା ? ଦିହ ମୁଣ୍ଡ ସବୁ କାଦୁଅ ମାଟିଅ । ଗନ୍ଧ ଯେ ଗନ୍ଧ ନାକ ଫାଟିଯାଉଚି ।

ଶଙ୍ଖ- ତୁ ସେଥିରୁ କଣ ପାଇବୁ ଶୁଣେ ।

ରତ୍ନା- ସାର୍ ପରା ମୋତେ ପଠେଇଚନ୍ତି । କହିଲେ ରତ୍ନାକର ତଳେ କୋଉଠି କଣ ଗୋଟେ ଦୁଲ୍‌ଦାଲ୍ ଶବ୍ଦ ହେଲା । ଦି ଜଣ କିଏ ଦୌଡାଦୌଡି

ହେଲେ । ଚୋରଫୋର ନୁହେଁ ତ ? ଯାଇ ଦେଖିଲୁ ଦେଖିଲୁ । ସେଇଥିପାଇଁ ପରା ମୁଁ ଟର୍ଚ୍ଚ ଧରି ଠେଙ୍ଗା ଧରି- ଆଜ୍ଞା ଆପଣ କଣ କୋଉ ନର୍ଦ୍ଦମା ଫର୍ଦ୍ଦମାରେ ପଡିଗଲେ କି ?

ଶଙ୍ଖ- ଓହୋ ତୋର ସେଥିରେ କଣ ଯାଏ ଆସେ ହୋ ?

ରତ୍ନା- ଆସେ । ସାର୍ କହିଛନ୍ତି ତାଙ୍କୁ ଯାଇ ଆଖୋଁ ଦେଖା ହାଲ କହିବାକୁ । ଯାଉଚି କହିଦେବି ।

ଶଙ୍ଖ- କଣଟେ କହିଦବୁ ? କଣଟେ ତୁ ଜାଣିଚୁ ଯେ କହିଦବୁ ?

ରତ୍ନା- ଯାହା ଦେଖିଲି ତାହା କହିଦେବି । ଶଙ୍ଖ ବାବୁ ଗଛ ମୂଳେ ଅନ୍ଧାରରେ ଲୁଚି ଛିଡା ହେଇଚନ୍ତି । ତାଙ୍କଦିହ ମୁଣ୍ଡଯାକ...

ଶଙ୍ଖ- (ମଝିରେ) ରତ୍ନାକର !

ରତ୍ନା- ଆଜ୍ଞା !

ଶଙ୍ଖ- ଏସବୁ କଥା କଣ ସାର୍‌ଙ୍କୁ କୁହାଯାଏ ? କଥାଟା ଭାରି ଅଡୁଆ ଧରି ଯାଇଚି ବୋଲି ବୁଝିପାରୁ ନା ?

ରତ୍ନା- ପାରୁଚି ଯେ...

ଶଙ୍ଖ- ପାରୁଚ ତ ପଚାରୁଚ କଣ ? ରତ୍ନାକର ରେ ! ଗୋଟେ ବଡ ଦୁର୍ଘଟଣା ହେଇଗଲା । ମୁଁ ଶୀଲା ଦେବୀଙ୍କ ରୁମ୍ ପଛ ପାଚିରୀ ସେ ପାଖ ସଫେଇ ଲେନ୍‌ରେ ପଡିଗଲି ।

ରତ୍ନା- ସଫେଇ ଲେନ୍‌ରେ ପଡିଗଲେ ? କେତେବେଳେ ? ଏଇ ରାତିରେ ? କେମିତି ?

ଶଙ୍ଖ- କେମିତି ବୋଲି କିଛି ବୁଝି ପାରୁ ନା ? ସେ ପଙ୍କ ସମୁଦ୍ରରେ କଣ କିଏ ନିଜ ଇଚ୍ଛାରେ ନିଶା ସ୍ନାନ କରେ ?

ରତ୍ନା- ତାହେଲେ ଆପଣ କାହା ଇଚ୍ଛାରେ ସ୍ନାନଟି କଲେ ? ଶୀଲା ଦେବୀଙ୍କର ? ଖାଲି ଏଇ ନିଶା ସ୍ନାନଟି ହେଇଚି ନା ମାଡଫାଡ କିଛି ?

ଶଙ୍ଖ- ରତ୍ନାକର !

ରତ୍ନା- ହଉ ହଉ ଗୁପ୍ତ କଥାଟା ନ କହନ୍ତୁ ପଛେ ଚୁପ୍‌ଚାପ ଯାଇ ରୁମ୍‌ରେ ଗାଧେଇ ପଡନ୍ତୁ । ଭାରି ଗନ୍ଧ ହଉଚି ।

ଶଙ୍ଖ- ଯିବି କେମିତି ? ବାର୍‌ହାଟା ପରା ମାଡିଚି ।

ରତ୍ନା- ବାର୍‌ହାଟା ? ଯା ଭିତରେ ? ଯା ଭିତରେ ବାର୍‌ହାଟେ କୁଆଡୁ ଆଇଲା ? (ହଠାତ୍ କଥାଟା ବୁଝି ପାରିଲା) ଓହୋ ହୋ- ବୁଝିଲି ବୁଝିଲି- ସାର୍ ଯୋଉ ଦୌଡା ଦୌଡି କଥା କହୁଥିଲେ ସେଟା ତାହେଲେ ଆପଣଙ୍କର

ଆଜି ସେଇ ବାର୍‌ହାଙ୍କ ଘୋଡା ଗୋଡି । ନାଇଁ ? (ହସି ଉଠିଲା) ହାଃ... ହାଃ... ହାଃ... ।

ଶଙ୍ଖ- ରତ୍ନାକର ! ହସ ମାଡୁଚି ?

ରତ୍ନା- (ହସି ହସି) କଣ କରିବି ? ହସ ଚ ମାଡି ଯାଉଚି ।

ଶଙ୍ଖ- ମୋ ଦିହରେ କାଦୁଅ ଗୁଡା ଅଠା ପରି ଲାଗି କୁଣ୍ଡେଇ ହେଲାଣି ଯେ କାହିଁରେ କଣ । ଗନ୍ଧ ଛାଡୁଚି ଯେ ସମ୍ଭଚା ପଡୁ ନାହିଁ । ତମକୁ ହସ ତ ମାଡିଯାଉଚି ?

ରତ୍ନା- ହେଲେ ବାର୍‌ହା ବାବୁ ବି ତ ତାଙ୍କ ରୁମ୍‌ରେ ପଶି କବାଟ କିଳି ଦେଇଚନ୍ତି । ତାଙ୍କର ବି ନିଶାସ୍ନାନ ହେଇଯାଇଚି ନା କଣ ? (ଚାପା ସ୍ୱରରେ ହସିଲା) ଶଙ୍ଖବାବୁ ! ଆଉ ବାର୍‌ହା ଭୟ ନାହିଁ । ଆପଣ ବି ଆପଣଙ୍କ ରୁମ୍‌କୁ ଯାଇ କବାଟ କିଳି ଦିଅନ୍ତୁ । ଆପଣଙ୍କର ଆହୁରି ଦିଘଣ୍ଟାର ସ୍ନାନଯୋଗ ଅଛି । ମୁଁ ବି ଯାଉଚି ।

ଶଙ୍ଖ- ହେଲେ ରତ୍ନାକର ଆଖୋଁ ଦେଖା ହାଲ କଥା ଯେମିତି କେହି ନ ଜାଣନ୍ତି ।

ରତ୍ନା- ଦେଖ ତ ଗୋବିନ୍ଦର ଗତି ! (ଚାପା ହସ ହସି ହସି ଚାଲିଗଲା) ।

## ସପ୍ତମ

(ଦିନକ ପରେ ସଂଧ୍ୟା । ବୀରେଶ୍ୱର ଦାସଙ୍କ ବଗିଚା । ସାମ୍‌ନା ସାମ୍‌ନି ଛିଡା ହୋଇଛନ୍ତି ଶଙ୍ଖ ସାହୁ ଓ ନାରୁ ଷଡ଼ଙ୍ଗୀ) ।

ନାରୁ- ପଅର ଦିନ ରାତି ଅନ୍ଧାରରେ ତ ଖସି ପଳେଇଲ । କାଲି ଦିନଟା ବି କୋଉ ବିଲରେ ଛପିକି ରହିଗଲ- ମାଟି ତଳେ ନା ତାଟି ତଳେ ? ଛପିକି ରହିଗଲ ବୋଲି ଜାଣ·ବଞ୍ଚିଗଲ । ନ ହେଲେ ମୁଁ ତମର ଏମିତି ଏକ ଦୁର୍ଘଟଣା କରି ଦେଇଥାନ୍ତି ଯେ...

ଶଙ୍ଖ- (ମଝିରେ) ଦୁର୍ଘଟଣାଟେ କରି ଦେଇଥାନ୍ତ ତ ନିଜେ ଦେଶ ଛାଡି ଉଭାନ ହେଇଗଲ କାହିଁକି ? କରିଦେଇ ଥିଲେ କଣ ଭାବୁଚ ମୁଁ ଯୀଶୁ ଖ୍ରୀଷ୍ଟଙ୍କ ପରି ତମକୁ ମୋର ଆର ଗାଲଟା ଦେଖେଇ ଦେଇଥାନ୍ତି ? ମୁଁ ବି ତମର ହିସାବ ନିକାଶ କରି ଦେଇ ଥାନ୍ତି ।

ନାରୁ- ସତରେ ? ତମେ ମୋର ହିସାବ ନିକାଶ କରି ଦେଇଥାନ୍ତ ? (ହସିଲା) ହାଃ ହାଃ ହାଃ... । ସେ କଥା ତମ ରୂପ ଲେକରୁ ଜଣା ପଡିଯାଉ ନାହିଁ ? ବୁଝିଲ ଶଙ୍ଖ ସାହୁ ଅଳସୁଆମାନେ ସିନା ବାରବାଟି ଚାଷ କରନ୍ତି ଗାଲୁଆ ମାନେ ବାଉଣ ବାଟି ଚାଷ କରନ୍ତି । (ହସିଲା)

ଶଙ୍ଖ- ଦିନଟାଯାକ ତ ଉଭାନ ହେଇଗଲ । ନ ହେଲେ ଜାଣିଥାନ୍ତ ବାରବାଟି ଚାଷ କି ବାଉଣ ବାଟି ଚାଷ । ମୁଁ ତମ ପରି ବଜାରୀ ଗୁଣ୍ଡା ଲଫଙ୍ଗା ନୁହେଁ । ମୁଁ

ଭଦ୍ରଲୋକ । ମୋର ଗୋଟେ prestige ଅଛି । ମୁଁ ଏମିତି ମରାମରି ପିଟାପିଟି କରେ ନାହିଁ ।

ନାରୁ- (ହସିଲା) ହାଃ ହାଃ ହାଃ... ଓଜନ ତ ତିରିଶ କି ପଇଁତ୍ରିଶ କେଜି । ବକ୍ସିଂ ଫକ୍ସିଂ କରି ମୋ ଦିହହାତ କେମିତି ହେଇଚି ଦେଖୁଚ ତ ମୋତେ ଦେଖୁ ଦେଲାମାତ୍ରେ ତ ତମର ଲୁଗାପଟାରେ ସାନପାସ୍ ହେଇ ଯାଉଥିବ । ମୋ ପାଖରେ ଭଦ୍ରଲୋକୀ ନ କଲେ ଦାନ୍ତପାନ୍ତ ଭାଙ୍ଗିଯାନ୍ତା ନାହିଁ ? ଭଦ୍ରଲୋକ ! ମୁଁ ଜଣେ ଭଦ୍ରଲୋକ ! (ହସି ଉଠିଲା) ହାଃ ହାଃ ହାଃ ...

ଶଙ୍ଖ- ହିଁ... ହିଁ... ମୁଁ ଜଣେ ଭଦ୍ରଲୋକ । ତମେ ଜଣେ ଅଭଦ୍ର ଲୋକ ।

ନାରୁ- ହାଃ... ହାଃ... ହାଃ... । ମୁଁ ଜଣେ ଭଦ୍ରଲୋକ । ମୁଁ ଜଣେ ତିରିଶ କେଜିଆ ଭଦ୍ରଲୋକ ! ହାଃ... ହାଃ... ହାଃ...

ଶଙ୍ଖ- Shut up !

ନାରୁ- ହାଃ... ହାଃ... ହାଃ...

ଶଙ୍ଖ- (ସ୍ୱର ସାମାନ୍ୟ ଉଚ୍ଚ କରି) Shut up ।

ନାରୁ- You shut up !

ଶଙ୍ଖ- You shut up !

ନାରୁ- ସେ ଝିଅଟା ଚାଲିଗଲା ବେଳେ ତମ ନାକ ତ ପଚା ଗନ୍ଧରେ ଫାଟି ଯାଉଥିଲା ତା ଆଗରେ ଯାଇ ଆଣ୍ଠେଇକି ବସିଥିଲ କେମିତି ? ସେଟା ପୁଣି କଣ ତମକୁ ଅତର ପରି ମହମହ ବାସିଲା ?

ଶଙ୍ଖ- ସେ ଝିଅର ମୁହଁଟା ତ ତମ ଦାଦାଙ୍କ କଳା ମାଙ୍କିଡୀ ମୁହଁ ପରି ଦିଶୁଥିଲା । ସେଇ ମାଙ୍କିଡୀ ମୁହଁକୁ ଚାହିଁ ଚାହିଁ ତମ ଆଖି ଭେଲକା ଧରିଗଲା କାହିଁକି ?

ନାରୁ- ତା ମୁହଁରୁ ଯଦି ଭକ୍ ଭକ୍ ହେଇ ପଚାଗନ୍ଧ ବାହାରୁଥିଲା ତା ହେଲେ ତା କଥାଗୁଡ଼ାକୁ ଅମୃତ ପରି ପିଇ ଯାଉଥିଲ କାହିଁକି ? ତମର କଣ ପୋଚରା ଜିନିଷ ଖାଇବାର ଅଭ୍ୟାସ ଅଛି ?

ଶଙ୍ଖ- ତା ପାଦରେ ଯାଦୁ କାଲୁ ବିଇଞ୍ଚି ସାଲୁବାଲୁ ହଉଥିଲେ ତ ସେଇ ପାଦକୁ ଧରି ଦେହି ପଦ ପଲ୍ଲବ ମୁଦାରଂ ଗୀତ ଗାଉଥିଲ କାହିଁକି ?

ନାରୁ- ତାଙ୍କ ବାଳଯାକ ସବୁ ଝୋଟ ପରି ଧଳା ?

ଶଙ୍ଖ- ତାଙ୍କ ଗୋଡ ଦିଟାଯାକ ଗୋଦର ?

ନାରୁ- ତାଙ୍କ ଅଣ୍ଟାରେ ଧଳା ଛଉ ?

ଶଙ୍ଖ- ତମେ ଏଇସବୁ କଥା କହୁଥିଲ ।

ନାରୁ- ତମେ ଏଇସବୁ କଥା କହୁଥିଲ ।

ଶଙ୍ଖ- ତମେ କିଛି କହୁ ନ ଥିଲ ?

ନାରୁ- ତମେ କିଛି କହୁ ନ ଥିଲ ?

ଶଙ୍ଖ- ହଁ ମୁଁ କହୁଥିଲି । କାହିଁକି କହୁଥିଲି ଜାଣିଚ ମୋଟା ବୁଦ୍ଧି ? ତମେ ତା ପାଖରେ ଯାଇ ଆଉ ନୁକୁରୁ ନୁକୁରୁ ହବ ନାହିଁ ବୋଲି ।

ନାରୁ- ହେଲି ତ କଣ ହେଇଗଲା ସେଥୁ ? ସେ ମୋତେ ଭଲ ପାନ୍ତି । ସେଇଥିପାଇଁ ହଉଥିଲି । ହଉଥିଲି ନୁହେଁ ହେବି ମଧ ।

ଶଙ୍ଖ- ହେଇ ପାରିବ ନାହିଁ ।

ନାରୁ- ଅଲବତ୍ ହେବି । ତାଙ୍କର ମୋର ବାହାଘର ହବ ।

ଶଙ୍ଖ- ତାଙ୍କର ତମର କଣ ହବ ?

ନାରୁ- ବାହାଘର- ବାହାଘର-

ଶଙ୍ଖ- ବାହାଘର ? (ହସି ଉଠିଲା) ହାଃ ହାଃ ହାଃ... । ନାରୁ ଖାରୁ ! ମୋର ସିନା ବାର ବାଟି ଚାଷ । ତମର ତ ଦେଖୁଚି ବାଉରି ବାଟି ଚାଷ । (ହସିଲା) ହାଃ ହାଃ ହାଃ... । ଶୀଲା ଦେବୀ ମୋତେ ଭଲ ପାନ୍ତି । ସେ ମୋତେ ବାହା ହେବେ । ତମେ ଯଦି ଆଉ କିଛି ଝମେଲା କରିଚ ତାହେଲେ ମୁଁ ତମର ଏମିତି ଗୋଟେ ଘୋର ଦୁର୍ଘଟଣା କରିଦେବି ଯେ ତମର ବାହାଘର ନିଶା ଏକାଥରେ ଉଭାନ୍ ହେଇଯିବ । ହୁସିଆର୍ !

ନାରୁ- ସେ ମୋତେ ଭଲ ପାନ୍ତି । ତେଣୁ ମୋତେ ବାହା ହେବେ । ଆଉ ଯଦି ତମକୁ ଆଉ ଥରେ ତାଙ୍କ ଘରେ ଦେଖୁଚି ତାହେଲେ ତମ ବେକକୁ ଧରି ପୁଣି ଥରେ ସେଇ ସପେଇ ପଙ୍କ ଭିତରକୁ ଫିଙ୍ଗି ଦେବି । ତମେ ବି ହୁସିଆର୍ !

ଶଙ୍ଖ- ଦେଖୁବା ତମେ କେମିତି ବାହା ହବ ।

ନାରୁ- ଦେଖୁବା ତମେ କେମିତି ବାହା ହବ ।

ଶଙ୍ଖ- ହଉ ଦେଖୁବା ।

ନାରୁ- ହଉ ଦେଖୁବା ।

ଶଙ୍ଖ- ଠିକ୍ ଅଛି ।

ନାରୁ- ଠିକ୍ ଅଛି ।

ଶଙ୍ଖ- ହଉ ଠିକ୍ ଅଛି । (ଚାଲିଗଲା) ।

ନାରୁ- ହଉ ଠିକ୍ ଅଛି । ଭଦ୍ର ଲୋକ ! ମୁଁ ଜଣେ ଭଦ୍ର ଲୋକ ! ହୁଁଃ... । (ଅନ୍ୟ ଦିଗରେ ଚାଲିଗଲା ) ।

## ଅଷ୍ଟମ

(ପ୍ରାୟ ସପ୍ତାହେ ପରେ । ସଂଧ୍ୟା ପ୍ରାୟ ଆଠଟା । ଅନ୍ଧାର ରାତି । ଶୀଲାର ରୁମ୍‌ରେ ସାମ୍ନା ସାମ୍ନି ବସିଛନ୍ତି ଶୀଲା ଓ ଶଙ୍ଖ ସାହୁ ।)

ଶୀଲା- (ଆଶ୍ଚର୍ଯ୍ୟ ଓ ଶଙ୍କିତ ସ୍ୱରରେ) ସତରେ ? ଶଙ୍ଖ ବାବୁ ! ଆପଣ ସତ କହୁଚନ୍ତି ?

ଶଙ୍ଖ- ବିଶ୍ୱାସ ହଉ ନାହିଁଟି ? ନ ହବା କଥା ତ । ଗୋଲ୍‌ଗାଲ ଚେହେରା କରିଚି । ଫିଟ୍ ଫିଟ୍ ଜାମାଯୋଡ ପିନ୍ଧୁଚି । ମିଠା ମିଠା କଥା କହୁଚି । ସମୟ ଅସମୟରେ ଶାଢ଼ୀ ଫାଡି ଇତ୍ୟାଦି ଆଣି ଦେଇ ଦଉଚି । ଏ ସବୁର ପଛରେ ସେଟାର ଏମିତି ଗୋଟେ ଖରାପ ମତଲବ୍ ଅଛି ବୋଲି ଆପଣଙ୍କର ବିଶ୍ୱାସ ହବ କେମିତି ?

ଶୀଲା- ସତ କଥା ଶଙ୍ଖ ବାବୁ ମୋର ଜମା ବିଶ୍ୱାସ ହଉ ନାହିଁ । ଆଚ୍ଛା ଆପଣ ଏ ସବୁ କଥା ଜାଣିଲେ କେମିତି ?

ଶଙ୍ଖ- ଉଦ୍‌ଯୋଗ କଲେ କଣ କରି ନ ହବ ? ସେ ଅବଶ୍ୟ ଭାରି ଚୁପିଆଢ଼ରେ ଲୁଚେଇ ରଖିଚି ସବୁ କଥା । ମୁଁ କିନ୍ତୁ ମୋ ବାଟରେ ସବୁ ଖବର ଯୋଗାଡ କରି ସାରିଲିଣି- ସତରେ କେତେ ପାଠ ପଢ଼ିଚି- କି ଚାକିରୀ କରିଚି- କେତେ ଟଙ୍କା ଦରମା ପାଉଚି- ଆଉ କୋଉ ଝିଅପିଅ ସାଙ୍ଗରେ ସଂପର୍କ ରଖିଚି - କାହା କାହା ସାଙ୍ଗରେ ମିଶୁଚି- ଏମିତି ଏମିତି ଅନେକ ଖବର । ବକ୍ସିଂ ଫକ୍ସିଂ କରୁଚି ବୋଲି କହୁଚି । ପ୍ରକୃତରେ ସେ ଗୋଟେ ଗୁଣ୍ଡା । ଆଉ ପାଞ୍ଚସାତ ଜଣଙ୍କୁ ମିଶେଇ ଗୋଟେ ଦଳ ଗଢ଼ିବା ମତଲବ୍‌ରେ ଅଛି । ଆପଣ ଏସବୁ କିଛି ଜାଣିଥିଲେ ? ଆପଣ ତା ମିଠା କଥାରେ ଭଳି ଯାଇଥିଲେ ।

ଶୀଲା- ଯାଇଥିଲି ତ ।

ଶଙ୍ଖ- ତାର ତ ସେୟା ହଉଚି Plan । ଆପଣଙ୍କୁ ମିଠା ମିଠା କଥା କହି ମଝିରେ ମଝିରେ କିଛି ଶସ୍ତା Presentation ପ୍ରେଜେଣ୍ଟେସନ୍ ଦେଇ କିଛି ଖୁଚୁରା ପ୍ରେମ ପ୍ରେମ କରିବ । ତାପରେ ଦିନେ ତା ଦଳକୁ ଲଗେଇ ହଠାତ୍ ଆପଣଙ୍କୁ ଉଠେଇ ନେଇ କୁଆଡେ ଚାଲିଯିବ । କହିବ ମୋତେ ବାହା ହୁଅ ନ ହେଲେ ଛାଡିବି ନାହିଁ ।

ଶୀଲା- (ଆଶ୍ଚର୍ଯ୍ୟ ଓ ଭୟ ପ୍ରକାଶ କରି) କଣ କହୁଚନ୍ତି ଶଙ୍ଖ ବାବୁ ? ଏ ସବୁ କଥା ସତ- ଆପଣ ଠିକ୍ ଜାଣିଛନ୍ତି ?

ଶଙ୍ଖ- ଠିକ୍ କରି ନ ଜାଣିଥିଲେ ମୁଁ ଏତେ ବଡ ଗୁରୁତର କଥାଟେ ଆପଣଙ୍କୁ କହିଥାନ୍ତି ?

ଶୀଲା- ତାହେଲେ ତ ଅବସ୍ଥାଟା ଭାରି Dangerous । କଣ କରାଯିବ ?

ଶଙ୍ଖ- Dangerous ଅବସ୍ଥାକୁ dangerous ଉପାୟରେ ସାମ୍ନା କରିବାକୁ ହବ ।

ଶୀଲା- ବୁଝି ପାରିଲି ନାହିଁ । କଣ ମରାମରି ପିଟାପିଟି ?

ଶଙ୍ଖ- ନା... ନା- ସେ ଗୁଡା ତାରି ପରି ଗୁଣ୍ଡାମାନଙ୍କ କାମ । ଆମେ ବୁଦ୍ଧି ଖର୍ଚ୍ଚ କରି କାମ କରିବା । ପ୍ରଥମ କଥା ହେଲା ଆପଣ ସେ ଗୁଣ୍ଡାଟାକୁ ଆଉ ଜମା ଘର ଭିତରକୁ ପଶିବାକୁ ଦେବେ ନାହିଁ ।

ଶୀଲା- ହଉ । ତା ପରେ ?

ଶଙ୍ଖ- ତାପରେ ବାହାରେ ଯଦି କୋଉଠି ଦେଖା ହେଇଗଲା ତାହେଲେ ମୁହଁ ମୋଡି ଦେଇ ଚାଲିଯିବେ ।

ଶୀଲା- ଏତେ ଦିନରୁ ଜଣା ଶୁଣା ଅଛି । ମୁହଁ ମୋଡି ଦେଇ ଯିବାଟା... ଆଚ୍ଛା ହଉ ତାପରେ ?

ଶଙ୍ଖ- ଏସବୁ କଥା ଆପଣ ଜାଣିଚନ୍ତି ବୋଲି କାହାରିକି କହିବେ ନାହିଁ । କହିଲେ ସେ ସାବଧାନ ହେଇଯିବ ! ଆଉ ଯଦି କେତେବେଳେ କିଛି ଝମେଲାର ସୁରାକ ପାଇଲେ ତା ହେଲେ ସାଙ୍ଗେ ସାଙ୍ଗେ ମୋତେ ଖବର ପଠେଇ ଦେବେ ।

ଶୀଲା- ଦେବି ଯେ ହେଲେ ଶଙ୍ଖବାବୁ ଆପଣ ଏତେ ପତଳା । ଆପଣ କଣ ତାଙ୍କୁ ପାରିବେ ? ସେ ତ କେଜାଣି କେତେ ମୋଟା ଆପଣଙ୍କଠୁ ।

ଶଙ୍ଖ- ହେଲା ତ କଣ ହେଇ ଗଲା ସେଠୁ ? ଏ ସବୁ ବୁଦ୍ଧିର କାମ । ବିଧାର କାମ ନୁହେଁ । ମୁଁ ତାକୁ ଠିକ୍ ସାବାଡ କରିଦେବି ।

ଶୀଲା- କେଜାଣି ? ମୋର ଜମା ବିଶ୍ୱାସ ହଉ ନାହିଁ । କେମିତି କରି ଦେବେ ?

ଶଙ୍ଖ- ନାଇଁ ଥାଉ । ପରେ କହିବି ।

ଶୀଲା- ନାଇଁ ନାଇଁ ଏଇ ସାଙ୍ଗେ ସାଙ୍ଗେ କହନ୍ତୁ - ମୋ ମନ ଭାରି ଉଚ୍ଛାଟ ହଉଚି ।

ଶଙ୍ଖ- ଶୀଲା ଦେବୀ ! କହି ଦିଅନ୍ତି ଯେ ଆପଣ ରାଗ କରିବେ । ଆଉ ।

ଶୀଲା- ନା... ନା- ରାଗ କରିବି କାହିଁକି ? ଆପଣ ତ ନାରୁବାବୁଙ୍କୁ ସାବାଡ କରିଦେବେ । ମୁଁ ତ ବରଂ ଖୁସି ହେବାର କଥା । କହନ୍ତୁ ।

ଶଙ୍ଖ- କହିବି ? ଶୀଲା ଦେବୀ ! ମାନେ ମାନେ ମୁଁ କଣ କହୁଥିଲି କି ହେଁଃ ! ହେଁଃ.... ହେଁ... । ଶୀଲା ଦେବୀ ! ଆପଣ ମୋତେ ଭଲ ପାନ୍ତି ?

ଶୀଲା- ଓହୋ ଏ କଥାଟା କହିବାକୁ ଏତେ ଗୌରଚନ୍ଦ୍ରିକା ? ଆପଣ କଣ ଜାଣନ୍ତି ନାହିଁ ?

ଶଙ୍ଖ- ହେଁଃ ହେଁଃ ହେଁଃ... ଜାଣେ ଯେ...

ଶୀଲା- ଜାଣନ୍ତି ତ ପଚାରୁଥିଲେ କାହିଁକି ?

ଶଙ୍ଖ- ହେଁଃ... ହେଁଃ... ହେଁଃ... । ନାଇଁ ମାନେ ମାନେ ସେଇଥିପାଇଁ ମୁଁ କଣ କହୁଥିଲି କି ନାରୁ ଷଡ଼ଙ୍ଗୀଟା ଗୋଟେ ଗୁଣ୍ଡା ବୋଲି ତ ଆପଣ ଜାଣିଲେ । ସେ ଆପଣଙ୍କୁ

ଉଠେଇ ନେଇ ଯାଇ ଆପଣଙ୍କୁ ଜୋର୍ କରି ବାହା ହେଇ ପଡିବା ମତଲବ୍‌ରେ ଅଛି ବୋଲି ବି ଜାଣିଲେ । ଆପଣ କଣ ସତରେ ଗୋଟେ ଗୁଣ୍ଡା ଲୋକଟାର ସ୍ତ୍ରୀ ହବାକୁ ଭଲ ପାଇବେ ?

ଶୀଲା- What nonsense are you talking ? ମୁଁ ଗୋଟେ ଗୁଣ୍ଡା ଲୋକଟାର ସ୍ତ୍ରୀ ହବାକୁ ଭଲ ପାଇବି ? I hate that man- (କିଞ୍ଚିତ ଉଚ୍ଚ ସ୍ୱରରେ) I hate that man very much-

ଶଙ୍ଖ- ହେଁଃ ହେଁଃ ହେଁଃ... । ମୁଁ ଜାଣେ ଶୀଲା ଦେବୀ ମୁଁ ଜାଣେ- ଆପଣ ସେଟାକୁ ବହୁତ ଘୃଣା କରନ୍ତି- ଆଉ ମୋତେ ବହୁତ ଭଲ ପାନ୍ତି । ହେଁଃ... ହେଁଃ... ହେଁଃ... । ସେଇଥିପାଇଁ- ଶୀଲା ଦେବୀ ସେଇଥିପାଇଁ ମୁଁ କଣ କହୁଥିଲି କି- ଚାଲନ୍ତୁ ଆମେ (ହଠାତ୍ ଆବେଗର ସହ) ଆମେ ବାହା ହେଇ ପଡିବା ।

ଶୀଲା- (ଆଶ୍ଚର୍ଯ୍ୟ ପ୍ରକାଶ କରି) କଣ କହିଲେ ? ଆମେ- ଆମେ ବାହା ହେଇ ପଡିବା ?

ଶଙ୍ଖ- (ସଲ୍ଲଜ) ହେଁଃ... ହେଁଃ... ହେଁଃ... । (ହାତ ପାପୁଲି ଘସିଲା) ହେଁଃ... ହେଁଃ... ହେଁଃ... । ଖାଲି ମୁଁ କହିଦେଲେ କଣ ହେଇଯିବ ? ଆପଣଙ୍କ ଅସୀମ ଦୟା ନ ହେଲେ କଣ ହେଇପାରିବ ? ହେଁଃ... ହେଁଃ... ହେଁଃ... । ଯାହା ହେଲେ ବି ମୁଁ ଆପଣଙ୍କ ପାଇଁ ଗୋଟିଏ ନିହାତି ଅଯୋଗ୍ୟ ଅକିଞ୍ଚନ ଲୋକଟିଏ । ତେବେ ମୁଁ ଭାବିଲି ସେ ଗୁଣ୍ଡାଟା ଯେତେବେଳେ ଆପଣଙ୍କୁ ଉଠେଇ ନବା ମତଲବ୍‌ରେ ଅଛି ମୋର କିଛି ଦୁଃସାହସ ବି କରିବା ଦରକାର- ସେ ଯୋଉଦିନ ଜାଣିବ ଯେ ଆମର ବାହାଘର ହେଇଗଲାଣି ସେ ଆଉ ସେ ପ୍ରକାର ବଦ୍‌ମାସୀ କରିବାକୁ ଆଉ ମନ କରିବ ନାହିଁ । ମାନେ କଥାଟା କଣ କି ଜଣକୁ Already ବାହା ହେଇଯାଇଥିବା ଜଣେ ସ୍ତ୍ରୀ ଲୋକ Sorry- sorry- ଜଣେ ମହିୟସୀ ମହିଳାକୁ ସେ ଆଉ ଥରେ ବାହା ହବାକୁ ଚାହିଁବ କି ? ଚାହିଁବ ନାହିଁ ।

ଶୀଲା- ସେ କଥା ବୁଝିଲି ଯେ...

ଶଙ୍ଖ- ଅବଶ୍ୟ ମୋ ପରି ଗୋଟେ ଅଯୋଗ୍ୟ ଅକିଞ୍ଚନ ଲୋକ ଆପଣଙ୍କ ପରି ଜଣେ ମହିୟସୀ ମହିଳାକୁ ବାହା ହବାକୁ ଦୁଃସାହସ କରିବାଟା-

ଶୀଲା- ନା.. ନା... ଶଙ୍ଖ ବାବୁ- Please- Please- ସେମିତି କହିବେ ନାହିଁ- ମୋ ମନ ଦୁଃଖ ହବ । ବରଂ ମୁଁ ଆପଣଙ୍କ ପାଇଁ ଯୋଗ୍ୟ ନୁହେଁ । ଆପଣଙ୍କର କେତେ ବଡ ଚାକିରୀ କି ସୁନ୍ଦର ଚେହେରା- କେତେ ଜ୍ଞାନ ବୁଦ୍ଧି- ମୋର ତ ପରମ ସୌଭାଗ୍ୟ । ତେବେ ଶଙ୍ଖ ବାବୁ ଆମେ ଏମିତି ହଠାତ୍ ବାହା ହେଇ ପଡିବା ? ମୋତେ ଭାରି ଡର ଡର ଲାଗୁଚି ।

ଶଙ୍ଖ- ଏଥିରେ ଡରିବାର କଣ ଅଛି ? ଆପଣ ମୋତେ ଭଲ ପାନ୍ତି । ମୁଁ ଆପଣଙ୍କୁ ଭଲ ପାଏଁ । ଆଉ ବର୍ଷେ ଦେଢ଼ବର୍ଷ ଭିତରେ ଆମର ଯେମିତି ହେଲେ ବାହାଘର ହେଇଥାନ୍ତା । ଟିକେ ଆଗରୁ ହେଇଗଲା- ଏଇ ଯାହା କଥା । ଏଥିରେ ଡରିବାର କଣ ଅଛି ?

ଶୀଲା- ଅବଶ୍ୟ ଅବଶ୍ୟ- ତା ହେଲେ- ତା ହେଲେ ଆମେ ବାହା ହେଇ ପଡିବା ? ଆଚ୍ଛା ନାରୁ ବାବୁ ଜାଣିଲେ କିଛି ଗଣ୍ଡଗୋଳ କରିବେ ନାହିଁ ତ ?

ଶଙ୍ଖ- ସେ କିଛି ଜାଣିବା ପୂର୍ବରୁ ତ ଆମର କାମ ଶେଷ । ସେଟା ଆଉ କଣ କରିବ ? ଆପଣ ଚୁପ୍‌ଚାପ୍ ହେଇ ବସନ୍ତୁ । ମୁଁ ଏଇ ଚାରିପାଞ୍ଚ ଦିନ ଭିତରେ ସବୁ ବନ୍ଦୋବସ୍ତ କରି ଦଉଚି । ଆମେ ଚୁପ୍‌ଚାପ୍ କୋର୍ଟକୁ ଚାଲି ଯିବା । ବାହା ହେଇ ପଡିବା- ଚାଲି ଆସିବା । ବାସ୍ !

ଶୀଲା- ନାଇଁ ନାଇଁ ଶଙ୍ଖବାବୁ ଆମର ଏଠି ବହୁତ ଚିହ୍ନା ଲୋକ । ସେମାନେ ସବୁ ଜାଣି ପକେଇବେ । ଆମେ ବରଂ ମୋ ମାମୁଁଘରକୁ ପଳେଇବା ବଲାଙ୍ଗୀର । ସେମାନେ ଭାରି ଭଲ ଲୋକ । ସବୁ ବନ୍ଦୋବସ୍ତ କରିଦେବେ । ଆମେ ସେଇଠି ବାହା ହେଇ ପଡିବା ।

ଶଙ୍ଖ- ବଲାଙ୍ଗୀର ଯିବା ? ହଉ ଠିକ୍ ଅଛି । ଯିବା । ମୁଁ ପ୍ରସ୍ତୁତ । କେବେ ଯିବା !

ଶୀଲା:- ଆଜି ହେଲା ସୋମବାର । ଆମେ- ଆମେ ତା ହେଲେ ଶୁକ୍ରବାର ଦିନ ଚାଲିଯିବା ।

ଶଙ୍ଖ:- ଠିକ୍ ଅଛି । ଶୁକ୍ରବାର ଦିନ ଉପରଓଳି ବସ୍‌ରେ ଚାଲିଯିବା । ସେଠି ତା ଆରଦିନ ଭୋଓର ବେଳକୁ-

ଶୀଲା:- (ମଝିରେ) ନା... ନା... ନା... ନା- ଦିନ ବେଳେ ଜମା ନୁହେଁ । ଲୋକ ଦେଖି ପକେଇବେ । ଆମେ ରାତି ବସ୍‌ରେ ଯିବା । ଦିଟା କି ତିନିଟା ବେଳକୁ ।

ଶଙ୍ଖ- ହଉ ଠିକ୍ ଅଛି । ମୁଁ ସେଇ ଅନୁସାରେ ଟିକେଟ ଫିକେଟ୍ କରି ଆସି ଆପଣଙ୍କୁ ରାତିରେ ନେଇଯିବି ।

ଶୀଲା- ନାଇଁ... ନାଇଁ- ଆପଣ ଆଉ ଏଠିକି ଆସିବା ଜମା ନିରାପଦ ନୁହେଁ । ନାରୁବାବୁ ପାଖରେ ଅଛନ୍ତି । ଆମ ଉପରେ ନିଶ୍ଚେ ନଜର ରଖିଥିବେ । ଆମକୁ ଯଦି ଏକାଠି ଯିବାର ଦେଖି ପକେଇଲେ ସବୁ ଗଣ୍ଡଗୋଳ ହେଇଯିବ । ତାଙ୍କ ଦଳକୁ ଧରିକି ଚାଲି ବି ଆସି ପାରନ୍ତି । ମୁଁ ଭାବୁଚି ଶୁକ୍ରବାର ଦିନ ରାତି ଦୁଇଟା ପନ୍ଦର ବେଳକୁ ଆପଣ ସିଧା ମହାବୀରପଡ଼ା ଉଗ୍ରେଶ୍ୱରୀ ମନ୍ଦିର ପଛପଟ ତୋଟାର ପୂର୍ବପଟେ ଯାଇ ଅପେକ୍ଷା କରିଥିବେ । ସେଟା ଟାଉନ୍‌ର ଶେଷ । ପାଖକୁ ମଶାଣୀ । ଗହଳି ଚହଳି କିଛି ନାହିଁ । ଚାରିଆଡ ଅନ୍ଧାର ହେଇଥିବ । କେହି କିଛି ଜାଣି ପାରିବେ ନାହିଁ ।

ଶଙ୍ଖ- କିନ୍ତୁ ସେ ଅନ୍ଧାର ଭିତରେ ଆପଣ ମୋତେ ପାଇବେ କେମିତି ?

ଶୀଲା- ଆପଣ ଗୋଟିଏ ହଳଦିଆ ରଙ୍ଗର ସଫରି ସୁଟ୍ ପିନ୍ଧିଥିବେ । ଛାତି ପକେଟରେ ନାଲି ରୁମାଲଟେ ଅଧା ଝୁଲା କରି ରଖିଥିବେ । ଦି ହାତରେ ମଲ୍ଲୀମାଳ ବାନ୍ଧି ମଝିରେ ମଝିରେ ଉପରକୁ ଟେକୁଥିବେ ଯେମିତି ଦୂରରୁ ଦେଖାଯିବ ।

ଶଙ୍ଖ- ଆଉ ଆପଣ ?

ଶୀଲା- ମୋର ଏତେ ଶାଢ଼ୀ ଅଛି । ଯୋଉଟା ହେଲେ ଗୋଟେ ପିନ୍ଧିଦେବି ।

ଶଙ୍ଖ- ନାଇଁ... ନାଇଁ... । ଆପଣ ବରଂ ଗୋଟେ କଳା ଶାଢ଼ି କଳା ବ୍ଲାଉଜ ପିନ୍ଧନ୍ତୁ । ଅନ୍ଧାର ଭିତରେ ମିଶିଯିବେ । କେହି ଜାଣି ପାରିବେ ନାହିଁ । ତେବେ ଆପଣଙ୍କର ସେମିତିକା ଶାଢ଼ି ବ୍ଲାଉଜ ତ ନ ଥିବ । ମୁଁ କାଲି କିଣି ଆଣି ଦେଇଯିବି ।

ଶୀଲା- ନାଇଁ... ନାଇଁ... ଶଙ୍ଖ ବାବୁ ଆପଣ ମୋ ପାଇଁ କେଜାଣି କେତେ ଶାଢ଼ି ବ୍ଲାଉଜ୍ ଆଣି ଦେଲେଣି । ଆଉ ଆଣନ୍ତୁ ନାହିଁ- Please ! ମୋତେ ଭାରି ବୋଝ ବୋଝ ଲାଗିଲାଣି । ଲାଜ ବି ମାଡିଲାଣି ।

ଶଙ୍ଖ- ଆରେ ଏଥିରେ ଲାଜ ମାଡିବାର କଣ ଅଛି ? ଆପଣଙ୍କର କଳା ଶାଢ଼ି ବ୍ଲାଉଜ ନାହିଁ । ମୁଁ ଆଣି ଦେଇଗଲି । ଏଥିରେ ଆପଣଙ୍କୁ ଲାଜ ମାଡିବ କାହିଁକି ? ହଉ ! ତା ହେଲେ ସେୟା କଥା ହେଲା । ଶୁକ୍ରବାର ରାତି ଦିଟା ପନ୍ଦର । ମହାବୀରପଡା ଉଗ୍ରେଶ୍ବରୀ ମନ୍ଦିର ପଛ ତୋଟାର ପୂର୍ବପଟ । ମୋର ହଳଦିଆ ରଙ୍ଗର- (ମନେ ପକାଇବାର ଚେଷ୍ଟା)

ଶୀଲା- ସଫରି ସୁଟ୍ ।

ଶଙ୍ଖ- ହଁ... ହଳଦିଆ ରଙ୍ଗର ସଫରି ସୁଟ୍ । ପକେଟରେ ନାଲି ରୁମାଲ୍ । ଦି ହାତରେ ମଲ୍ଲୀମାଳ । ଆଉ ଆପଣଙ୍କର କଳା ଶାଢ଼ୀ କଳା ବ୍ଲାଉଜ । ଅଣ୍ଟାରେ ଧଳା ରୁମାଲ । ହେଲା ? ମୁଁ ତାହେଲେ ଯାଉଚି । ବସ୍ ଟିକଟ ଫିକଟ୍ ଇତ୍ୟାଦି ଇତ୍ୟାଦି ସବୁ ଏ ଭିତରେ ବନ୍ଦୋବସ୍ତ କରିଦେବି । କଳା ଶାଢି କଳା ବ୍ଲାଉଜ ବି ଆଣି ଦେଇଯିବି । ଆଃ ! ଶୀଲା ଦେବୀ ! ମୋ ମନଟା ଏତେ ଖୁସି ଲାଗୁଚି ଯେ ମନ ହଉଚି କଣ ଗୋଟେ ଗୀତ ଫୀତ ଗାଇ ଏଠି ଖଣ୍ଡେ ନାଚିଯାନ୍ତି । ହେଁଃ... ହେଁଃ... ହେଁଃ...

ଶୀଲା- (ହସି ଉଠିଲା) ନା... ନା... ନା... ନା-ଜମା ସେ କାମ କରିବେ ନାହିଁ- ଜମା ସେ କାମ କରିବେ ନାହିଁ- ଏଟା କଣ ଓଡିଆ ସିନେମା ହେଉଚି ? (ଉଭୟେ ହସି ଉଠିଲେ)

ଶଙ୍ଖ- ହଉ ତା ହେଲେ ମୁଁ ଗଲି । ଖାଲି ଶୁକ୍ରବାର ଦିନ ବସ୍‌ରେ ବସି ଗଲେ ନା- (ଆବୃତ୍ତି କଲା ପରି) ଶଙ୍ଖ ଆଉ ଶୀଲା/ ନାକୁଖାରୁ ଗୁଣ୍ଡା ରାତି ଅନିଦ୍ରା/

ମୁଗୁରା ମୁହଁ ମେଲା/ ଶଙ୍ଖ ଆଉ ଶୀଲା/ ନାରୁ ଖାରୁ ଗୁଣ୍ଡା ରାତି ଅନିଦ୍ରା/ ମୁଗୁରା ମୁହଁ ମେଲା/ ଶଙ୍ଖ ଆଉ ଶୀଲା/ ମୁଗୁରା ମୁହଁ ମେଲା/ ଶଙ୍ଖ ଆଉ ଶୀଲା/ ମୁଗୁରା ମୁହଁ ମେଲା- (ହସି ହସି ଚାଲିଗଲା)

## ନବମ

(ସେଇ ରାତି । ସମୟ ପ୍ରାୟ ନଅଟା । ଶୀଲାର ରୁମ୍ । ସାମ୍‌ନା ସାମ୍‌ନି ସୋଫାରେ ନାରୁ ଷଡ଼ଙ୍ଗୀ ଓ ଶୀଲା ।)

ନାରୁ- ଶୀଲା ଦେବୀ ! ପ୍ରାୟ ଦେଢ଼ଘଣ୍ଟା ତଳେ ମାନେ ପ୍ରାୟ ସାଢ଼େ ସାତଟା ବେଳକୁ କିଏ ଗୋଟେ ଲୋକ ଆପଣଙ୍କ ପାଖକୁ ଆସିଥିଲା କି ? ଗୋଟେ ନାଲି ଗାର ଗାର କଳା ଜାମା ଆଉ କଳା ପେଣ୍ଟ ପିନ୍ଧିଥିଲା । ମୁଣ୍ଡରେ ପଗଡି ପରି କଣ ଗୋଟେ ଗୁଡେଇ ଥିଲା । କାନ୍ଧରେ ଗୋଟେ ନେତା ମାର୍କା ଝୁଲା ମୁଣି । ଖାଲି କନକନ କନକନ ହେଉ ଏଣେ ତେଣେ ଚାହୁଁଥିଲା । କିଏ କି ସେ ଲୋକଟା ? ସେ ରାସ୍କେଲଟା ନୁହେଁ ତ ?

ଶୀଲା- ନାଇଁ... ନାଇଁ- ସେ ଲୋକଟା ଆମ ଦାଦାଙ୍କ ଗୁମାସ୍ତା ।

ନାରୁ- ସେଟା କାହିଁକି ଆସିଥିଲା ଆପଣଙ୍କ ପାଖକୁ ?

ଶୀଲା- ତାର ଉଣ୍ଡା ଯେତିକି ପୋତା ତାଠୁଁ ବେଶୀ । ଭଣ୍ଡା ହେଲା ଦାଦା ତା ହାତରେ ମୋ ଜନ୍ମଦିନ ପାଇଁ ଟଙ୍କା ପଠାଇଥିଲେ । ଆଉ ଏ ପୋତା ହେଲା- ଛାଡନ୍ତୁ ସେ କଥା ଆପଣ ନ ଜାଣିଲେ ଭଲ ।

ନାରୁ- ନାଇଁ... ନାଇଁ... କହୁ ନାହାନ୍ତି- କହନ୍ତୁ ।

ଶୀଲା- ପୋତା ହେଲା ଦାଦାଙ୍କ ଝିଆରୀକୁ କିଛି ଚୋରା ଚୋରା ପ୍ରେମ କରିବା । ସେଇଥିପାଇଁ ସେ ଚୋରଙ୍କ ପରି କନ କନ ହେଉଥିଲା । (ହସିଲା) ହିଁଃ... ହିଁଃ... ହିଁଃ... ।

ନାରୁ- (ହସି ହସି) ମୁଁ ଭାବିଲି ସେଇ ରାସ୍କେଲଟା ବୋଲି । ସେଟା ବେଳେବେଳେ ଏମିତି ନବଗୁଞ୍ଜର ବେଶ ହୁଏ ତ- ଆଚ୍ଛା ଶୀଲା ଦେବୀ ! ଏଥର ତା ହେଲେ ମୋର ନମ୍ବର କେତେ ହେଲା ? ତିନ ନା ଆହୁରି ବେଶୀ ? ମୁଁ ଆସିଲାବେଳକୁ ଦେଖିଲି ଦୁଇ ନମ୍ବର ବାବୁଟି ଆପଣଙ୍କ ରୁମ୍ ଆଡକୁ ବଗ- ମାଛ ନୟନରେ ଟାକି ବସିଛନ୍ତି । ମୁଁ ଜାଣିଶୁଣି ଅନ୍ଧାର ଭିତରେ ପାଚିରୀ ଆଡକୁ ଦିଚାରଟା ଟେକା ପଛକୁ ପଛ ମାରିଦେଲି । ଯେମିତି ଧଦ୍ ଧାଦ୍ ଶବ୍ଦ ହେଇଚି ଦୁଇ ନମ୍ବର ବାବୁ ତ ଅତର୍କିରେ ତାଙ୍କ ରୁମ୍ ଭିତରେ ପଶି ଯାଇ କବାଟ କିଳି ଦେଲେ । ମୁଁ ତାରି ଭିତରେ ଆପଣଙ୍କ ରୁମ୍‌କୁ ଖସି ଆସିଚି ।

ଶୀଲା- (ହସିଲା) ବିଚରା ଦୁଇ ନମ୍ବର ବାବୁ ! ହେଲେ ନାରୁ ବାବୁ ! ଏକ ନମ୍ବରଟି

କିଏ କି ? (ଉଭୟେ ହସି ଉଠିଲେ) ।

ନାରୁ- ହଉ ମୋ କାମଟା ମୁଁ ଜଲ୍‌ଦି ସାରିଦିଏଁ । (ବ୍ୟାଗରୁ କାଢ଼ି) ଏଇ ହେଲା ଆପଣଙ୍କ ପାଇଁ ନାଲି ଶାଢ଼ି ନାଲି ବ୍ଲାଉଜ ଆଉ ନାଲି ଯୋତା ।

ଶୀଲା- ଆଃ ! କି ସୁନ୍ଦର ହେଉଚି ଏ ଶାଢ଼ି ! ନିଶ୍ଚେ ବହୁତ ଟଙ୍କା ପଡ଼ିଥିବ । ଏତେ ଟଙ୍କା ଦେଇ କାହିଁକି ଆଣିଲେ କହିଲେ ? ମୁଁ ଆପଣଙ୍କ ଉପରେ ରାଗ କରିବି ।

ନାରୁ- ଆରେ ନା ନା ଟଙ୍କା ସେମିତି ବେଶୀ କିଛି ନୁହେଁ । ହେଲା ବା ଦାମିକା ଆପଣଙ୍କ ପାଇଁ ଦାମିକା ଶାଢ଼ି ବ୍ଲାଉଜ ଆଣି ନ ଦେବି ତ ଆଣିବି କାହା ପାଇଁ ?

ଶୀଲା- (ଲାଜେଇ ଯାଇ) ଯାଃ...

ନାରୁ- ଏ ଶାଢ଼ି ଯେମିତି ଲାଲ୍ ଦିଶୁଚି ଯାକୁ ପିନ୍ଧି ଦେଇ ଅନ୍ଧାର ଭିତରେ ବାହାରି ପଡିଲେ ଦେଖିବା ଲୋକ ଠାକୁରାଣୀ ବାହାରିଚନ୍ତି ବୋଲି ଭାବି ଡରି ପଳେଇବେ । ରଙ୍ଗଟା ବି ଆପଣଙ୍କ ଗୋରା ଦେହକୁ ଭାରି ସୁନ୍ଦର ମାନିବ । ଶୀଲା ଦେବୀ ! ଗୋଟେ କଥା କହିବି ?

ଶୀଲା- କହନ୍ତୁ ।

ନାରୁ- ଆମ ମଧୁଶଯ୍ୟା ରାତିରେ କିନ୍ତୁ ଆପଣ ନିଶ୍ଚେ ନାଲି ରଙ୍ଗର ଶାଢ଼ି ବ୍ଲାଉଜ ପିନ୍ଧିବେ । ମୁଁ ଆହୁରି ସୁନ୍ଦର ଦାମିକା ଶାଢ଼ି ବ୍ଲାଉଜ ଆଣିଦେବି । ବେଳ ଥିଲେ ମୁଁ ଏ ଶାଢ଼ିବ୍ଲାଉଜ ଆପଣଙ୍କୁ ପିନ୍ଧିବାକୁ କହିଥାନ୍ତି । ମୁଁ ଟିକିଏ ଦେଖିଥାନ୍ତି କେମିତି ସୁନ୍ଦର ଦିଶୁଚନ୍ତି ଆପଣ ।

ଶୀଲା- (ଲାଜେଇ ଯାଇ) ଯାଃ ! ଆପଣ ଭାରି ଯେ !

ନାରୁ- (ଭାରି ମନ ଖୁସି) ହଉ ମୁଁ ଏଥର ଯାଏଁ । ଆଉ ଏ ଭିତରେ ଆସିବି ନାହିଁ । ସେ ସ୍କାଉଣ୍ଡ୍ରେଲ୍‌ଟା ଛକିଚି । ପୁଣି ଯାଇ ଶୁକ୍ରବାର ଦିନ ରାତି ଗୋଟେ ତିରିଶରେ ଦେଖା । ଉଗ୍ରେଶ୍ୱରୀ ମନ୍ଦିର ପଛପଟ ତୋଟାର ଉତ୍ତରପଟ । ଆପଣଙ୍କର ନାଲି ଶାଢ଼ି ନାଲି ବ୍ଲାଉଜ ନାଲି ଯୋତା । ମୋର ଧଳା ପେଣ୍ଟ କଳା ଜାମା । ମୁଁ ମଝିରେ ମଝିରେ ଧଳା ରୁମାଲଟେ ପତାକା ପରି ଉପରକୁ ଟେକି ହଲଉଥିବି । ଆମେ ସେଇଠୁ ସିଧା ଷ୍ଟେସନ । ଟ୍ରେନରେ ବାଲେଶ୍ୱର । ତାପରେ ବାରିପଦା ଆମ ପିଉସାଙ୍କ ଘର । ଆପଣ କିନ୍ତୁ ସେ ମିନି ମୁହାଁ ଧୂର୍ତ୍ତଟାକୁ ହୁସିଆର ଥିବେ । (ସ୍ୱର କମେଇ) ଆଉ ସେ ପୋଡାବୁଦ୍ଧି ଗୁମାସ୍ତାଟାକୁ ବି- (ହସି ହସି ଯିବାକୁ ବାହାରିଲା)

ଶୀଲା- (ହସି ହସି) ଆପଣ ବି ହୁସିଆର ଥିବେ । ଅନ୍ଧାର ଘୁଡଘୁଡିମାନେ ଅନ୍ଧାର ଭିତରେ ଛକି ବସିଥାନ୍ତି । ଟିକେ ଓର ପାଇଗଲେ ମାଡି ବସନ୍ତି-(ହସିଲା । ନାରୁ ମଧ ହସି ହସି ଚାଲିଗଲା)

(ଶନିବାର ଭୋଓର୍ । ଉଗ୍ରେଶ୍ୱରୀ ମନ୍ଦିର ପଛପଟ ତୋଟାର ପୂର୍ବପଟ । ଚାରିଆଡ ଅନ୍ଧାର । ଶଙ୍ଖ ସାହୁ ଗୋଟେ ଗଛକୁ ଆଉଜି ଆଖି ବୁଜି ବସିଛି । ରାତି ଅନିଦ୍ରା ଯୋଗୁଁ କ୍ଳାନ୍ତ । ପାଖରେ ଗୋଟେ ଆଟାଚି ।)

ଶଙ୍ଖ- (ନିଦ ଭାଙ୍ଗିଯାଇଛି । ସିଧା ହୋଇ ଉଠି ବସି ଆଖି ଖୋଲି ହାଇ ମାରିଲା ଓ ଚାରିଆଡକୁ ଚାହିଁଲା ।) ଟିକେ ଶୋଇଗଲି କି ରେ ? କେତେ ବାଜିଲା ? (ଘଡି ଦେଖି) ଚାରିଟା ଦଶ ? ଏଁ- ଏ ଭିତରେ ଚାରିଟା ଦଶ ବାଜିଗଲାଣି ? My God ! ଶୀଲା ଦେବୀ ଏତେବେଳଯାକେ ଗଲେ କୁଆଡେ଼ ? ସେ ତ ଏଠି ଆସି ଦିଟା ପନ୍ଦରରେ ପହଞ୍ଚିବା କଥା । ସେୟାକୁ ହିସାବ କରି ମୁଁ ତ ରାତି ଦେଢଟାରୁ ଆଟାଚିରେ ଟଙ୍କା ପଇସା ଧରି ଆସି ଏଠି ବସିଚି । ତାଙ୍କର ତ ନ ଆସିବାର କଥା ନୁହେଁ । ତା ହେଲେ ସେ ଗଲେ କୁଆଡେ ? ଆମର ତ କଥା ହୋଇଥିଲା ଉଗ୍ରେଶ୍ୱରୀ ମନ୍ଦିର ପଛପଟ ତୋଟାର ପୂର୍ବ ପଟରେ ମୁଁ ଥିବି । ମୁଁ ତ ପୂର୍ବପଟେ ବସିଚି । ହଳଦିଆ ସଫରି ସୁଟ୍ ପିନ୍ଧିଥିବି- ପିନ୍ଧିଚି । ପକେଟ୍‌ରେ ନାଲି ରୁମାଲ୍ ଝୁଲେଇବା କଥା- ଝୁଲେଇଚି । ଦି ହାତରେ ଦିଟା ମଲ୍ଲୀମାଳ ଗୁଡେଇ ହାତକୁ ଉପରକୁ ଉଠେଇ ହଲେଇବା କଥା- ହଲେଇଚି । ତଥାପି ଶୀଲା ଦେବୀ ମୋତେ କଣ ଆଉ ଏ ଅନ୍ଧାରରେ ଦେଖି ପାରିଲେ ନାହିଁ ନା ମୋର କେତେବେଳେ ଆଖି ବୁଜି ହୋଇ ଯାଇଥିଲା- ମୁଁ ତାଙ୍କୁ ଦେଖି ପାରିଲି ନାହିଁ ? ନା ସେ ବାଉଳାରେ ପୂର୍ବପଟ କୋଉଟା ଜାଣି ନ ପାରି ଆଉ କୁଆଡେ ପଳେଇଲେ ? ଆଉ କଣ କଳା ଶାଢ଼ି କଳା ବ୍ଲାଉଜ ପିନ୍ଧିଥିଲେ ବୋଲି ଅନ୍ଧାରରେ ମୁଁ ତାଙ୍କୁ ଦେଖିକି ବି ଠଉରେଇ ପାରିଲି ନାହିଁ ? ଧୁତ୍ ତେରି ! ଅନ୍ଧାରରେ କଳା ଜିନିଷଟା ଦିଶେ ନାହିଁ ବୋଲି ତୁ ଶଳା ବୁଡବକ୍ ଶଙ୍ଖ ସାହୁ ଜାଣି ନ ଥିଲୁ ? ଜାଣିଥିଲୁ ତ ତାଙ୍କ ପାଇଁ କଳା ଶାଢ଼ି କଳା ବ୍ଲାଉଜ୍ କାହିଁକି କିଣି ଆଣି ଦେଇଥିଲୁ ? ଶଳା ସବୁ ସରିଲା ପରେ ବୁଦ୍ଧି ଗଜରୁଚି ! ଆଚ୍ଛା ଏଇଟା ସତରେ ପୂର୍ବପଟଟି ? ଶଳା ସେତିକି ବି ମୋ ମୁଣ୍ଡରେ ପଶୁ ନାହିଁ । ଯାଃ ! ଶୀଲା ଦେବୀ ଯଦି ସତରେ ମୋତେ ନ ପାଇ ମନଦୁଃଖରେ ଫେରି ଯାଇଥିବେ ନା ମୋ ଜୀବନଟା ଏକଦମ୍ ବରବାଦ୍ ହେଇଗଲା ବୋଲି ଜାଣ । ଆଚ୍ଛା ସେ ଗୁଣ୍ଡାଟା ଆଉ କଣ ଶେଷ ମୁହୂର୍ତ୍ତରେ କିଛି ଗଣ୍ଡଗୋଳ କରିଦେଲା କି ? ଯଦି କରିଥିବ ନା ତାର ଏମିତି ଏକ ଘୋର ଦୁର୍ଘଟଣା କରି ଦେବି ଯେ- ଛାଡ ସେ କଥାରୁ ଆଉ ଏଇନା କଣ ମିଳିବ ? ସେ ଶଳା ବଲାଙ୍ଗୀର ବସ୍ ବି ଯାଇସାରିବଣି । ଯାଉ ଶଳା ବସ୍ । ଆମେ ଟାକ୍ସିରେ ପଳେଇବୁଁ । ପର୍ଡିଲେ ପଦୁ ହଜାରେ

ଦିହଙ୍କାର । ହେଲେ ଶୀଲା ଦେବୀ କାହାନ୍ତି ? ସେ କଣ ପୂର୍ବପଟ କୋଉଟା ଠିକ୍ କରି ନପାରି ଆଉ କୋଉଠି ଅପେକ୍ଷା କରି ବସିଛନ୍ତି ? ଦେଖେଁ- ଟିକେ ବୁଲି ଆସେଁ । (ଆଟାଚି ଧରି କିଛି ବାଟ ଏଣେ ତେଣେ ବୁଲି ଦେଖିଲା । କିଛି ସମୟ ପରେ) ଏଁ ! ସେଠି ସେ ଉତ୍ତର ପଟରେ କଣ ଗୋଟେ ଧଳା ଧଳା ଦିଶୁଚି । ଭୂତ ପ୍ରେତ ନା କଣରେ ବାବା ? ମଶାଣୀଟା ତ ସେଇ ପାଖରେ । ଏଠି ତ ଭୂତପ୍ରେତ ଏକ ଦୁଇ ସଂଖ୍ୟାରେ ନ ଥିବେ । ଏକଦମ୍ ପଲଟନ୍‌ଟେ ଥିବେ । କଣ କରାଯିବ ? ଧୂତ ତେରି ! ତୁ ଶଳା ଶଙ୍ଖସାହୁ ଏତେ ପାଠଶାଠ ପଢ଼ି ବି ଏଡିକି ଇଡିୟଟ୍ ? ଆବେ ଅନ୍ଧାର ଭିତରେ ଦିଶୁଚି ବୋଲି ଯାହା ଗୋଟେ ଧଳା ଧଳା ଦିଶିଲା ସେଟା ଗୋଟେ ଭୂତ ? ପାଖରୁ ଦେଖାଯାଉ କଣ ସେଟା । ଭୂତ ହେଇଥିଲେ ବି ଦେଖାଯାଉ । ମୁଁ ଗୋଟେ ହେଲେ ବି ଭୂତ ଆଜିଯାକେ ପାଖରୁ ଦେଖି ନାହିଁ । (ସେଇ ଧଳା ଆଡକୁ ଧୀରେ ଧୀରେ ଆଗେଇଲା) ଆବେ ସେଟା ଧଳା ଧଳା କଣ ଗୋଟେ ପତାକା ପରି ହଲଉଚି ! ଭୂତ ମାନେ ତ ଏମିତି ପତାକା ହଲେଇବାର କଥା ନୁହେଁ । ତା ହେଲେ କଣ ଛିଣ୍ଡା ଧଳା କନାଟେ ପବନରେ ଉଡୁଚି ? (ଆଉ ଟିକେ ପାଖକୁ ଯାଇ) ଏଁ- ଏଟା ଗୋଟେ ମଣିଷ ପରି ଦିଶୁଚି ! ଆବେ ଏଟା କିଏ କି ରେ ? (ଆଉ ଟିକେ ପାଖକୁ ଗଲା) ଏଁ- ଏଟା ଏଟା ତ ନାରୁ ଷଡ଼ଙ୍ଗୀ ପରି ଦିଶୁଚି । ଏ ରାସ୍କେଲଟା ଯା ଭିତରକୁ ଆସିଲା କେମିତି ? ଧଳା କନା ହଲେଇ ହଲେଇ କାହାକୁ କିଛି ଗୋଟେ ସିଗନାଲ୍ ଦଉଚି ନା କଣ ? କାହାକୁ ଦଉଚି ? ତା ଗୁଣ୍ଡାମାନଙ୍କୁ ? My goodness ! ଶଳାଟା କଣ ଜାଣି ପାରିଲା କି ଶୀଲା ଦେବୀ ମୁଁ ଏଠିକି ଆସୁଚୁଁ ବୋଲି ? ତା ହେଲେ ଏଇଟା ସବୁର ମୂଳ ? (ହଠାତ୍ ପାଟି କରି) କିଏ ? କିଏ ସେଠି ଛିଡା ହେଉଚି ? (ନାରୁ ଷଡ଼ଙ୍ଗୀ ଶୁଣିପାରି ଆଟାଚି ଧରି ଧାଇଁ ପଳେଇବାର ଚେଷ୍ଟା କଲା) ହେ... ହେ... ହେ- ପଳେଇଚୁ କୁଆଡେ ? ପଳେଇଚୁ କୁଆଡେ ? ରହୁଚୁ ନା ଚୋର ଚୋର ବୋଲି ହଲ୍ଲା କରିବି ? (ତା ଆଡକୁ ଧାଇଁଲା । ନାରୁ ଷଡ଼ଙ୍ଗୀ ଗଛ ଉହାଡରେ ଲୁଚି ଯିବାର ଚେଷ୍ଟା କଲା । ଶଙ୍ଖ ତା ପାଖରେ ପହଞ୍ଚି ଯାଇ ତା ହାତକୁ ଜୋରରେ ଧରି ପକେଇଲା) କିଏ ? ନାରୁବାବୁ ? (ନାରୁ ଷଡ଼ଙ୍ଗୀ ଶଙ୍ଖର ହାତକୁ ଛିଞ୍ଚାଡି ଦେଇ ଚାଲିଯିବାକୁ ଚେଷ୍ଟା କରୁଥିଲା) ଛିଡା ହବ ନା ପାଟି କରିବି ? (ନାରୁ ଛିଡା ହୋଇଗଲା) ନାରୁବାବୁ ! ତମେ ଏତେ ରାତିରେ ଏଠି କଣ କରୁଚ ?

ନାରୁ- ତମେ ସେଥିରୁ କଣ ପାଇବ ?

ଶଙ୍ଖ- ମୁଁ ପଚାରୁଚି ତମେ ଏତେ ରାତିରେ ଏଠି କଣ କରୁଚ ?

ନାରୁ- ତମେ ଏତେ ରାତିରେ ଏଠି କଣ କରୁଚ ?

ଶଙ୍ଖ- କହିବ ନାହିଁ ?

ନାରୁ- ନା କହିବି ନାହିଁ ।

ଶଙ୍ଖ- କହିବ ନାହିଁ ?

ନାରୁ- କହିଲି ପରା କହିବି ନାହିଁ ।

ଶଙ୍ଖ- ଠିକ ଅଛି ! ନ କୁହ । ମୁଁ ପୋଲିସକୁ ଖବର ଦେଇ ଦଉଚି । ପୋଲିସ ବାନ୍ଧି ନେଲେ ଠିକ କହିବ ।

ନାରୁ- ଦେଇ ଦଉନା- ପୋଲିସ ଆସିଲେ କଣ ଖାଲି ମୋତେ ଏକା ବାନ୍ଧିବ ? ତମେ ବି ବନ୍ଧା ହେଇଯିବ । ଖବର ଦେଇ ଦଉନା ? ଦିଅ ।

ଶଙ୍ଖ- ମୁଁ ଭଲରେ ଭଲରେ ପଚାରୁଚି-

ନାରୁ- ମୁଁ- ମୁଁ ଏଠିକି ଦୁଇ କରିବାକୁ ଚାଲି ଆସିଚି ।

ଶଙ୍ଖ- କଣ କରିବାକୁ ଚାଲି ଆସିଚ ? ଦୁଇ କରିବାକୁ ?

ନାରୁ- ହଁ ଦୁଇ କରିବାକୁ । ତମର ସେଥିରେ କଣ ଅସୁବିଧା ?

ଶଙ୍ଖ- ନାରୁଖାରୁ ଗାଲୁମାଧବ ! ତମେ ଏଠିକି ଦୁଇ କରିବାକୁ ଚାଲି ଆସିଚ ତମ ଘର ଆଗରେ ପଛରେ ଦି ଦି ଟା ମଖମଲି ପାଇଖାନା ଥାଉଁ ଥାଉଁ ତମେ ଫିନ୍ ଫିନ୍ ପେଣ୍ଟ ଜାମା ପିନ୍ଧି ଟେରି ପାଡେଇ ସେଣ୍ଟ ମାରି ଆଟାଚି ଧରି ଏ ଅନ୍ଧାର ରାତିରେ ସାତ ଆଠ କିଲୋମିଟର ଏ ଅପନ୍ତରାକୁ ଆସିଥିଲ ଦୁଇ କରିବାକୁ ? କଣ ନାଟକ କରୁଚ ? ହାସ୍ୟ ନାଟକ ?

ନାରୁ- ଆଉ ତମେ ଶଙ୍ଖସାରୁ ଏ ଚିକ୍ ଚିକ୍ ସଫରି ସୁଟ ପିନ୍ଧି ନାଲି ରୁମାଲ ଝୁଲେଇ ମୁଣ୍ଡକୁ ପାଡେଇ ସ୍ନୋ ପାଉଡର ବୋଳି ହେଇ ଏ ଅପନ୍ତରାକୁ କାହିଁକି ଆସିଥିଲ ? କଣ ରଙ୍ଗରସ କରିବାକୁ ନା ମୁକ୍ତବାୟୁ ସେବନ କରିବାକୁ ?

ଶଙ୍ଖ- ମୁଁ କଣ ଜାଣିନାହିଁ ତମେ ଏଠିକି କାହିଁକି ଆସିଥିଲ ? ଶୀଲା ଦେବୀ ଏଠୁ ମୋ ସାଙ୍ଗରେ ବଲାଙ୍ଗୀର ତାଙ୍କ ମାମୁଁ ଘରକୁ ଯିବେ ବୋଲି ଜାଣି ପକେଇ ତମେ ଏଠି ଗୋଟେ ଝମେଲା କରିବାକୁ ଆସିଥିଲ ।

ନାରୁ- କଣ କହିଲ ଶଙ୍ଖ ସାରୁ ? ଶୀଲା ଦେବୀ ଏଠୁ ତମ ସାଙ୍ଗରେ ବଲାଙ୍ଗୀର ଯାଇଥାନ୍ତେ ? ତାଙ୍କ ମାମୁଁ ଘରକୁ ? ସତ କଥାଟା ନ ଜାଣିଥିଲେ ଜାଣ । ଶୀଲା ଦେବୀ ଏଠୁ ମୋ ସାଙ୍ଗରେ ବାରିପଦା ଯାଇଥାନ୍ତେ ଆମ ପିଉସୀଙ୍କ ଘରକୁ ।

ଶଙ୍ଖ- ନାରୁଖାରୁ ! ଗାଲୁଆମୀ କରିବାକୁ ବିଷୟ ପାଇଲ ନାହିଁ ? ଶୀଲା ଦେବୀ ତମ ସାଙ୍ଗରେ କାହିଁକି ବାରିପଦା ଯାଇଥାନ୍ତେ ଶୁଣେ ।

ନାରୁ- ଶୀଲା ଦେବୀ ତମ ସାଙ୍ଗରେ କାହିଁକି ବଲାଙ୍ଗୀର ଯାଉଥାନ୍ତେ ଶୁଣେ ।

ଶଙ୍ଖ- ଶୁଣିବ କହି ଦେବି ?

ନାରୁ- ତମେ ଶୁଣିବ କହି ଦେବି ? ଶୁଣିଲା ମାତ୍ରେ ତମର ଏକଦମ୍ ହାର୍ଟ ଫେଲିଓର ହେଇଯିବ । ବାରିପଦାରେ ଶୀଲା ଦେବୀଙ୍କ ସାଙ୍ଗରେ ମୋର ମ୍ୟାରେଜ ହେଇଥାନ୍ତା ।

ଶଙ୍ଖ- କଣ ହେଇଥାନ୍ତା ? ମିଆରେଜ୍ ? ତମର ତାଙ୍କ ସାଙ୍ଗରେ ମିଆରେଜ୍ ହେଇଥାନ୍ତା ? ତମେ ତାହେଲେ ସେଇ ମିଆରେଜ୍ ହବାକୁ ଜାମାଯୋଡ ହେଇ ଏ ଅପନ୍ତରା ଭିତରେ ଧାରଣା ଦେଇଥିଲ । ନାଇଁ ? ତମକୁ ଟିକେ ହେଲେ ଲଜ୍ଜା କି ସରମ ନାହିଁ ? ସତ କଥାଟା କଣ ଶୁଣିବ ? ସତ କଥାଟା ଶୁଣିଦେଲେ ତୁମର ବି ହାରଟ୍ ଫେଲିୟୋର ହେଇଯିବ । ଶୀଲା ଦେବୀଙ୍କ ସାଙ୍ଗରେ ମୋର ବାହାଘର ହେଇଥାନ୍ତା । ତମେ ନାରୁଖାରୁ ଯାହା ଟିକେ ଝମେଲା କରିଦେଲ । ନ ହେଲେ ଆମେ ଏତେବେଳକୁ ଯାଇ ଅଧା ବାଟରେ ଥାଆନ୍ତୁଣି । ତଥାପି ମୁଁ ନାରୁଖାରୁ କହି ଦଉଚି ତମେ ଯେତେ ଯାହା କଲେ ବି ଆମର ବାହାଘର ଏକଦମ୍ final । ତମେ ମାନେ ମାନେ ଓହରି ଯା । ନହେଲା ଝମେଲା ହେଇଯିବ ।

ନାରୁ- ତମେ ମାନେ ମାନେ ଓହରି ନ ଗଲେମୁଁ ବି ଝମେଲା କରିଦେବି । ମୁଁ ବି ଭାରି ଅସୁବିଧା ଲୋକ । ଦେଖୁଚ ତ ମୋର ଏ ମସଲମାନଙ୍କୁ । ତାଙ୍କ ସାଙ୍ଗରେ ମୋର ବାହାଘର କଥା final ।

ଶଙ୍ଖ- ନାରୁଖାରୁ ମୋଟା ବୁଦ୍ଧି ତମେ ଟିକେ ଡେରିରେ ବୁଝ । ସେଇଥିପାଇଁ ଘର କବାଟ କଣରେ ବସି କାକରା ଖାଉଚ । ସେ ମୋତେ ନିଜେ କହିଚନ୍ତି ମୋତେ ବାହା ହେବେ ।

ନାରୁ- ସେ ମୋତେ ନିଜେ କହିଚନ୍ତି ମୋତେ ବାହା ହେବେ ।

ଶଙ୍ଖ- ସେ ମୋତେ କହିଚନ୍ତି କି ନାହିଁ ଯା ପଚାରି ଆସିବ ।

ନାରୁ- ସେ ମୋତେ କହିଚନ୍ତି କି ନାହିଁ ତମେ ଯା ପଚାରି ଆସିବ ।

ଶଙ୍ଖ- ଠିକ୍ ଅଛି । ଚାଲ ପଚାରିବା ।

ନାରୁ- ଚାଲ ପଚାରିବା ।

ଶଙ୍ଖ- ଚାଲୁ ନା ? ଧମକଉଚ କାହାକୁ ? ଚାଲ ।

(ଉଭୟେ ଶୀଲା ଦେବୀଙ୍କ ରୁମ୍ ଉଦ୍ଦେଶ୍ୟରେ ବାହାରି ଗଲେ । )

( ଶୀଲାର ରୁମ୍ ଆଗ )

ଶଙ୍ଖ- ଶୀଲା ଦେବୀଙ୍କ ରୁମ୍ ହେଇଗଲା । ତମେ ଏଥର ଚୁପ୍‌ଚାପ୍ ହେଇ ଛିଡା ହୁଅ । ମୁଁ ତାଙ୍କୁ ଡାକେଁ । (ମୋଲାୟମ ସ୍ୱରରେ) ଶୀଲା ଦେବୀ ! ଶୀଲା ଦେବୀ ! (ଉତ୍ତର ନାହିଁ) ଶୀଲା ଦେବୀ !

ନାରୁ- ବଡ ପାଟିରେ ଡାକୁ ନା- ସେମିତି ମିଁ ମିଁ ହଉଚ କାହିଁକି ?

ଶଙ୍ଖ- ଚୁହ ହୋ ! ସବୁ କଥାରେ ହାଉ ହାଉ । ରାତିଯାକ ଅନିଦ୍ରା ହେଇ ରାଗିମାଗି ଆସି ଶୋଇଚନ୍ତି । ତାଙ୍କ ମନ ଦୁଃଖ ହେଇଯାଇଥିବ ଯେ କେଜାଣି କେତେ । ଏଇନା ଜମା ପାଞ୍ଚଟା ପଚିଶ । ଘମାଘୋଟ ନିଦ ହେଉଥିବ । ହଲ୍ଲା କରିଦେବି ? ତମେ ଚୁପ୍‌ଚାପ୍ ହେଇ ବସ ତ । ସେ ଉଠନ୍ତୁ ।

ନାରୁ- ସେ କେତେବେଳେ ଉଠିବେ- ଆମେ ବସିଥିବା ? ମୁଁ ମୋ ରୁମ୍‌କୁ ଯାଉଚି । ଶୀଲା ଦେବୀ ଉଠିଲେ ମୋତେ ଡାକିଦବ ।

ଶଙ୍ଖ- ଜମା ଯାଇ ପାରିବ ନାହିଁ । କଥାଟା ଫଇସଲା ହେଇ ସାରୁ । ତା ପରେ ଯୁଆଡେ ଯାଉଚ ଯା ।

ନାରୁ- (ହଠାତ୍ ଦେଖି ପକେଇ) ଏଁ ! ତାଙ୍କ କବାଟରେ କଣ ତାଲା ପଡିଚି !

ଶଙ୍ଖ- (ଦେଖି ପକେଇ ଆଶ୍ଚର୍ଯ୍ୟ ହୋଇ) ହଁ ତ- ତାଲା ତ ପଡିଚି । ମାନେ ଶୀଲା ଦେବୀ ଯା ଭିତରେ ନାହାନ୍ତି ? ସେଠି ନ ଥିଲେ । ଏଠି ବି ନାହାନ୍ତି । ତାହେଲେ ଗଲେ କୁଆଡେ ? କାଲି ସବୁ ଠିକ୍‌ଠାକ୍ ଥିଲା । ଆଜି ସକାଳେ ଦେଖିଲା ବେଳକୁ... ହୁଁଃ ! ଆଚ୍ଛା ! ଏମିତ କଥା ! ନାଇଁ ? (ଗମ୍ଭୀର ସ୍ୱର) ନାରୁ ବାବୁ !

ନାରୁ- କଣ ?

ଶଙ୍ଖ- ଶୀଲା ଦେବୀ କୁଆଡେ ଗଲେ ?

ନାରୁ- ମୁଁ କେମିତି ଜାଣିବି ?

ଶଙ୍ଖ- ତମେ ସବୁ ଜାଣିଚ ।

ନାରୁ- ମୁଁ କେମିତି ଜାଣିବି ହୋ ?

ଶଙ୍ଖ- ତମେ ସବୁ ଜାଣିଚ । କହି ପକା । ଜଲ୍‌ଦି । ମନ ଉଚାଟ ହଉଚି ।

ନାରୁ- କହିଲି ପରା ମୁଁ କିଛି ଜାଣି ନାହିଁ ବୋଲି ।

ଶଙ୍ଖ- ଖାଲି କହିଦେଲେ ହେଇଗଲା ? କିଛି ଜାଣି ନାହିଁ ! ଯାତ୍ରା ହଉଚି ? ଯାତ୍ରା ? କିଛି ଜାଣି ନାହିଁ ! ବାହା ହୁଅ ବାହା ହୁଅ ବୋଲି ତାଙ୍କୁ ସବୁବେଳେ ହଇରାଣ କରୁଥିଲ । ସେ ସଫା ସଫା ମନା କରି ଦବାରୁ ତାଙ୍କୁ କୁଆଡେ ଉଠେଇ ନେଇଚ । ଏଠି ଆସି ବିରାଡି ବୈଷ୍ଣବ ପରି ଯାତ୍ରା କରୁଚ । ସେ ଚାଲାକୀ ଆଉ ଚଳିବ ନାହିଁ । କଥାଟା ଭାରି ଗୁରୁତର ହେଇଗଲାଣି । କଣ କରିଚ ଜଲ୍‌ଦି କୁହ । ନ ହେଲେ ମୁଁ ଥାନାକୁ ଚାଲିଲି ।

ନାରୁ- ଯିବ ଯଦି ଚାଲିଯା । ମୋତେ ସେ ବାଜେ ଧମକଗୁଡା ଶୁଣା ନା ।

ଶଙ୍ଖ- ନାରୁ ବାବୁ ! ସତ କଥା କୁହ କୋଉଠି ଲୁଚେଇଚ ।

ନାରୁ- ଶଙ୍ଖବାବୁ ! ତୁସିଆର ସେମିତିକା କଥା ମୋତେ ଆଉ କହିବ ନାହିଁ

କହିଦଉଚି ।

ଶଙ୍ଖ- ସତ କହୁଚ ? ତମେ ତାଙ୍କୁ ନେଇ କୋଉଠି ଲୁଚେଇ ରଖି ନା ? ହେଇଟି ! କଥାଟା ଭାରି ସ୍ତ୍ରୁତର । ଆଉ suspenseରେ ରଖ ନା । ମନଟା ଭାରି ଉତଳା ହଉଚି । କହିପକା ।

ନାରୁ- (ଉଚ୍ଚ ସ୍ୱରରେ ତାଗିଦ୍ କରି) ଶଙ୍ଖ ବାବୁ !

ଶଙ୍ଖ- ତା ହେଲେ ଶୀଲା ଦେବୀ ଆଉ ଗଲେ କୁଆଡେ ? କାଲି ସକାଳଯାକେ ଥିଲେ । ଆଜି ସକାଳେ ଦେଖିଲା ବେଳକୁ- ନାରୁ ବାବୁ ! ମୋତେ ଲାଗୁଚି କାଲି ରାତିରେ ସେ ଉଗ୍ରେଶ୍ୱରୀ ମନ୍ଦିରକୁ ଗଲାବେଳେ ତାଙ୍କୁ କିଏ ଉଠେଇ ନେଇଚି ।

ନାରୁ- My God ! ମାନେ ତାଙ୍କୁ କିଏ kidnap କରି ନେଇଚି ?

ଶଙ୍ଖ- (ହଠାତ୍ ଆବେଗ ଓ ଉତ୍ତେଜନା ସହ ଉଚ୍ଚସ୍ୱରରେ) ତମରି ପାଇଁ ନାରୁ ବାବୁ ତମରି ପାଇଁ ତାଙ୍କ ଉପରେ ଏଡେ ବଡ ଗୋଟେ ବିପତ୍ତି ପଡିଗଲା । କେଡେ ସୁନ୍ଦର ଚେହେରା- କେଡେ ମିଠା ମିଠା କଥା- କେଡେ ହସ ହସ ମୁହଁ- ମୋତେ କେଜାଣି କେତେ ଭଲ ପାଉଥିଲେ । ମୁଁ ଦିନେ ତାଙ୍କ ପାଖକୁ ନ ଗଲେ କାନ୍ଦି ପକଉଥିଲେ । ମୋତେ ବାହା ହବାକୁ ତାଙ୍କର କେତେ ମନ ଥିଲା । ଅଥଚ ତମରି ପାଇଁ- ନାରୁଖାରୁ ତମରି ପାଇଁ...

ନାରୁ- ଶଙ୍ଖ ବାବୁ ! ସେମିତିକା ବାଜେ କଥା ଆଉ କହିବ ନାହିଁ । ତମେ କିଛି ଜାଣିନା । ତାଙ୍କର ମୋତେଇ ବାହାହବାକୁ ଭାରି ମନ ଥିଲା । ଆମର ବାହାଘର ପାଇଁ ବନ୍ଦୋବସ୍ତ ବି ସରିଥିଲା ।

ଶଙ୍ଖ- ମାର ଗୁଳି ତମ ବନ୍ଦୋବସ୍ତକୁ । ତାଙ୍କୁ ତ କିଏ କୁଆଡେ ନେଇ ପଳେଇଲାଣି । ତାଙ୍କର ତ କଣ ନାଇଁ କଣ ହେଇଗଲାଣି । ଯାଙ୍କର ବନ୍ଦବସ୍ତ ହଉଚି ! ନାରୁବାବୁ ତାଙ୍କ ମୁହଁ କଣ ଆଉ ଥରେ ଦେଖିବାକୁ ମିଳିବ ନା ତାଙ୍କ ମିଠା ମିଠା କଥା ଆଉ କେବେ କାନରେ ପଡିବ ? କଥାଟା ଭାବିଦେଲା ବେଳକୁ ମୋ ହୃଦଟା ଖାଲି ଖଣ୍ଡ ଖଣ୍ଡ ହେଇଯାଉଚି । ଖଣ୍ଡ ଖଣ୍ଡ ହେଇଯାଉଚି । ତାଙ୍କ ବିନା ମୁଁ ଆଉ ଜମା ବଞ୍ଚିବି ନାହିଁ ଲୋ ନାରୁବାବୁ ମୁଁ ଏଥର ଜୀବନ ହାରିଦେବି । (ଯାତ୍ରା ସ୍ୱରରେ ଗାଇଲା) ହାରିବି ଜୀବନ ମୁହିଁ ହୋଇବି ସହିଦି/ କି ହେବ ରଖି ଏ ପ୍ରାଣ ନାହାନ୍ତି ସେ ଯଦି/ ନିହାତି ବାଜେ ଲୋକଟେ ନାହିଁ ଟିକେ ବୁଦ୍ଧି/ ବାହା ହେବି ବୋଲି କଲା ହରଦମ୍ ଜିଦି/ ଶେଷରେ ସପେଇ ପଙ୍କେ ପଡି ହେଲା ରଦ୍ଦି/ ଧୋଉ ଥା କନ୍ଥା ଏଥର ଗାଉଥା ଠୁମୁରି/ ଚାଲିଲି ମୁଁ ବନସ୍ତକୁ ପିନ୍ଧି ଚିରା ଖଦି ।

ନାରୁ- ଶଙ୍ଖବାବୁ ! କଣ ହଉଚି ଏ ସବୁ ?

ଶଙ୍ଖ- (ପୂର୍ବ ପରି ଆବୃତ୍ତି) ହାରିବି ଜୀବନ ମୁହିଁ ହୋଇବି ହେ...

ନାରୁ- (ମଝିରେ) ଶଙ୍ଖବାବୁ !

ଶଙ୍ଖ- ତମେ ନାରୁବାବୁ କଣ ଗୋଟେ ଅକର୍ମ ଶିଳା ? ଶୀଲା ଦେବୀ କେଡେ ବଡ ମହିୟସୀ ମହିଳା ଥିଲେ । କେଡେ ସୁନ୍ଦର ହସ ! କେଡେ ସୁନ୍ଦର କଥା । ତମେ କୁଆଡେ ତାଙ୍କୁ ପ୍ରେମ କରୁଥିଲ । ତାଙ୍କୁ କିଏ କୁଆଡେ ନେଇଗଲାଣି । ତାଙ୍କର କଣ ନାଇଁ କଣ ହେଇଗଲାଣି । ତମକୁ ଟିକେ କାନ୍ଦ ବି ମାଡୁ ନାହିଁ ? ମୁଁ କାନ୍ଦିଲା ବେଳକୁ ଶଙ୍ଖବାବୁ ଶଙ୍ଖବାବୁ ହଉଚ ?

ନାରୁ- ଚାଲ ବୀରେଶ୍ୱର ବାବୁ ଙ୍କ ପାଖକୁ ଯିବା । ତାଙ୍କୁ କଥାଟା ଜଣେଇବା ଦରକାର ।

ଶଙ୍ଖ- ଯୁଆଡେ କହିବ ସିଆଡେ ଯିବି । ଶୀଲା ଦେବୀଙ୍କୁ ଖୋଜୁଥିବି (ଆବୃତ୍ତି) । ହାରିବି ଜୀବନ ମୁହିଁ ହୋଇବି-

ନାରୁ- (ମଝିରେ) ଶଙ୍ଖ ବାବୁ !

ଶଙ୍ଖ- ରୁହ ହୋ ! ମୋ ଛାତିଟା ପରା ଖାଲି କୋରି ହେଇ ଯାଉଚି- କୋରି ହେଇ ଯାଉଚି । ଗୀତ ଫୀତ ଆସିଯିବ ନାହିଁ ? (ଆବୃତ୍ତି) ହାରିବି ଜୀବନ ମୁହିଁ- (ଗାଇ ଗାଇ ଚାଲିଗଲା । ନାରୁ ମଧ)

<u>କିଛି ମୁହୂର୍ତ୍ତ ପରେ ।</u>

<u>ବୀରେଶ୍ୱର ଦାସଙ୍କ ଘର ସାମନା ବାରଣ୍ଡା ।</u>

ନାରୁ- ଶଙ୍ଖବାବୁ ! ବୀରେଶ୍ୱର ବାବୁଙ୍କ ଦୁଆର ଭିତରୁ ବନ୍ଦ ଅଛି । ତମେ ସେ ବାଜେ ଗୀତ ଫୀତ ବନ୍ଦ କର । ମୁଁ ଡାକୁଚି । (ଡାକିଲା) ସାର୍ !

ଶଙ୍ଖ- ଟିକେ ଜଲ୍‌ଦି ଆସିବେ ସାର୍ ଭାରି ବିପଦ ହେଇଯାଇଚି ।

ନାରୁ- ଓହୋ ! ଚୁପ୍ କରି ଛିଡା ହେଇ ପାରୁ ନା ? ସାରୁ ! ସାର୍ !

ରତ୍ନା- (ଭିତରୁ) କିଏ ?

ଶଙ୍ଖ- ଆମେ ଶଙ୍ଖ ଆଉ ସାରୁ ସାର୍ ।

ନାରୁ- ଶଙ୍ଖବାବୁ !

ଶଙ୍ଖ- ନାଇଁ... ନାଇଁ... ସାର୍ ଆମେ ଶଙ୍ଖ ଆଉ ନାରୁ । ଟିକେ ଜଲ୍‌ଦି କବାଟ ଖୋଲନ୍ତୁ ।

ନାରୁ- ଓହୋ ସିଏ ପରା ରତ୍ନାକର । ତାକୁ ଏତେ ସାର୍ ସାର୍ କଣ କରୁଚ ?

ଶଙ୍ଖ- ଯୋଉ ଘୋର ବିପଦ ପଡିଚି ଏ ସମୟରେ ତାକୁ କଣ ସମସ୍ତଙ୍କୁ ସାର୍ କୁହାଯିବା କଥା । ପୁରାଣରେ ପଢି ନା ବିପଦରେ ପଡି ଭଗବାନ ଶ୍ରୀକୃଷ୍ଣ ବି କେମିତି ଗଧ ପାଦ ଧରିଥିଲେ । ତାଙ୍କ ବେଳେ ଏ ସାର୍ ଫାର୍ ଡାକ ନଥିଲା । ନ

ହେଲେ ଶ୍ରୀକୃଷ୍ଣ ସେ ଗଧକୁ ବି ସାର୍ ସାର୍ କରିଥାନ୍ତେ । ବୁଝିଲ ? ଏଥର ଚୁପ୍‌ଚାପ୍ ଛିଡା ହୁଅ (ଡାକିଲା) ସାର୍ ! ସାର୍ !

ବୀରେ- (କବାଟ ଖୋଲି ଆସିଲେ) ଆରେ ଶଙ୍ଖବାବୁ ! ନାରୁବାବୁ ! Two great men ? What a great good morning ! ଆପଣମାନେ ଏତେ ସକାଳୁ ? ବସନ୍ତୁ... ବସନ୍ତୁ ।

ଶଙ୍ଖ- ସାର୍ ! ମୋ ଛାତିକି ଗୋଟେ ଗୁଳି ମାରିଦେଇ ପାରିବେ ? ଦୁଃଖରେ ମୋ ଛାତିଟା ଖାଲି କୋରି ହେଇଯାଉଚି । ଠକ୍ କରି ବନ୍ଦ ହେଇଯାନ୍ତା ।

ନାରୁ- ଶଙ୍ଖବାବୁ !

ଶଙ୍ଖ- ତମେ ଚୁପ୍ ହୋ !

ବୀରେ- ଶଙ୍ଖବାବୁ କାହିଁକି ଏତେ ବ୍ୟସ୍ତ ହଉଚନ୍ତି ? ଗୁରୁତର କିଛି ଗୋଟେ ଘଟିଯାଇଚି ବୋଧହୁଏ । ହଉ ହଉ ବସନ୍ତୁ । କହନ୍ତୁ କଣ ହେଇଚି । (ସମସ୍ତେ ବାରଣ୍ଡା ସୋଫାରେ ବସିଲେ) ଏଥର କହନ୍ତୁ ।

ଶଙ୍ଖ- (ଦୁଃଖିତ) କଣ ଆଉ କହିବାକୁ ଅଛି ସାର୍ ସବୁ ତ ସରିଗଲାଣି । ମୋ ତଣ୍ଡିକୁ ଆଉ କଥା ସୁରୁ ନାହିଁ କି ମୁଣ୍ଡକୁ ଆଉ ବୁଦ୍ଧି ଦିଶୁ ନାହିଁ । ସବୁ ସରିଗଲାଣି ସାର୍ ସବୁ ସରିଗଲାଣି- ସବୁ ସରିଗଲାଣି ।

ବୀରେ- କଣ ସବୁ ସରିଗଲାଣି ? ନାରୁ ବାବୁ !

ନାରୁ- ସାର୍ ଶୀଲା ଦେବୀ ତାଙ୍କ ରୁମ୍‌ରେ ନାହାନ୍ତି । ତାଙ୍କ ରୁମ୍‌ରେ ତାଲା ପଡିଚି ।

ବୀରେ- (ଆଶ୍ଚର୍ଯ୍ୟ) ନାହାନ୍ତି ? ତାଲା ପଡିଚି ? Very strange !

ଶଙ୍ଖ- କଣ କରାଯିବ ସାର୍ ? ସେ କୋଉଠି ମିଳିବେ ? ନ ମିଳିଲେ ମୁଁ ଆଉ ଜମା ବଞ୍ଚିବି ନାହିଁ ସାର୍- (ଆବୃତ୍ତି) ହାରିବି ଜୀବନ ମୁହିଁ ହୋଇବି ସହିଦ/ କି ହେବ ରଖି ଏ ପ୍ରାଣ ନାହାନ୍ତି ସେ ଯଦି/ ହାରିବି...

ନାରୁ- (ମଝିରେ) ଶଙ୍ଖବାବୁ !

ବୀରେ- ଜଣେ ସୁନ୍ଦରୀ ଯୁବତୀ ଏମିତି ହଠାତ୍ ନିରୁଦ୍ଦିଷ୍ଟ ହେଇଯିବାଟା- ଆଚ୍ଛା ସେ ଅନ୍ୟ କୋଉଠିକି ବି ଯାଇ ଥାଇପାରନ୍ତି ।

ଶଙ୍ଖ- ନ ପାରନ୍ତି ସାର୍ ।

ବୀରେ- କାହିଁକି ନ ପାରନ୍ତି ସାର୍ ?

ଶଙ୍ଖ- ସେ କଥା ଆଉ ପଚାରନ୍ତୁ ନାହିଁ ସାର୍ କଥାଟା ମନେ ପଡି ଗଲା ବେଳକୁ ହୃଦଟା ଫାଟି ଖଣ୍ଡ ଖଣ୍ଡ ହେଇଯାଉଚି ।

ବୀରେ- ଧୈର୍ଯ୍ୟ... ଧୈର୍ଯ୍ୟ... ଶଙ୍ଖବାବୁ ! ଧୈର୍ଯ୍ୟ ।

ଶଙ୍ଖ- ସାର୍ ତାଙ୍କର କାଲି ମୋ ସାଙ୍ଗରେ ଭଗ୍ନେଶ୍ୱରୀ ମନ୍ଦିର ପଛପଟେ ଦେଖା କରିବାର ଥିଲା । ସେଇଠୁ ଆମେ ବଲାଙ୍ଗୀର ଯାଇଥାନ୍ତୁ ।

ବୀରେ- ବଲାଙ୍ଗୀର ଯାଇଥାନ୍ତେ ? କାହିଁକି ?

ନାରୁ- ଏକଦମ୍ ମିଛ କଥା ସାର୍ ସେଇଠୁ ଆମେ ବାରିପଦା ଯାଇଥାନ୍ତୁ ।

ଶଙ୍ଖ- ଓହୋ ରୁହ ହୋ ! ସବୁ କଥାରେ ଝମେଲା ପୂରେଇ ଦଉଚନ୍ତି । ସାର୍ ସେ ବୋଧହୁଏ ରାତିରେ ତାଲା ପକେଇ ଦେଇ ମୋ ପାଖକୁ ଯାଉଥିଲେ- ତାଙ୍କୁ ବାଟରୁ କେହି ଜଣେ ଉଠେଇ ନେଇ ଯାଇଚି ।

ବୀରେ- (କିଛିଟା ବ୍ୟସ୍ତଭାବ) ଉଠେଇ ନେଇ ଯାଇଚି ? My God ! ତାହେଲେ ତ ସାଙ୍ଗେ ସାଙ୍ଗେ ପୋଲିସରେ ଖବର ଦେଇଦବା କଥା । ନାରୁବାବୁ । ଆପଣ ଏ ବିଷୟରେ କିଛି ଜାଣନ୍ତି ?

ଶଙ୍ଖ- ସେଇ... ସେଇ... ସେଇ... ମହାପୁରୁଷଙ୍କ ପାଇଁ ସବୁ ଅନର୍ଥ । ସବୁ କଥାରେ ଝମେଲା ପୂରେଇ ଦେଇ କଣ ନା ମୁଁ ରାମଦାସ ବାବାଜୀ ମୁଁ ଖାଲି ତୁଳସୀ ପତ୍ର ଆଉ ହବିଷ୍ୟାନ୍ନ ଖାଏ । ସାର୍ । ମୋ ଛାତିକି ଗୋଟେ ଗୁଳି ମାରିଦେବେ ? ଫାଟିକି ଚଉଖଣ୍ଡ ହେଇଗଲାଣି । ଏକାଥରେ ଠକ୍ କିରି ବନ୍ଦ ହେଇଯାନ୍ତା ।

ନାରୁ- ଶଙ୍ଖବାବୁ !

ଶଙ୍ଖ- ରୁହ ହେ କାହିଁକି ସେମିତି ଗୋଟେ ହରଦମ୍ ଶଙ୍ଖବାବୁ ଶଙ୍ଖବାବୁ ହଉଚ ? ମୋ ହୃଦ ଦୁଃଖରେ ଫାଟିଯାଉଛି । ଶଙ୍ଖବାବୁ ! ମୁଁ କଣ ତମରି ପରି ଅକର୍ମଣିଆ ହେଇଚି ? (ବୀରେଶ୍ୱରଙ୍କୁ) ସାର୍ । ଆପଣଙ୍କ ପାଖରେ ସବୁ ଦୋଷ ମାନିଯାଉଚି ସାର୍ ଆପଣ ମନା କରିଥିଲେ । ହେଲେ ସେ ମହିୟସୀ ମହିଳାଙ୍କର ଯୋଉ ସୁନ୍ଦର ମୁହଁ ଯୋଉ ସୁନ୍ଦର ହସ ଯୋଉ ସୁନ୍ଦର କଥା- ସମ୍ଭାଳି ପାରିଲି ନାହିଁ ସାର୍ ତାଙ୍କ ପ୍ରେମରେ ପଡିଗଲି ।

ନାରୁ- ଶଙ୍ଖବାବୁ !

ଶଙ୍ଖ- ମାନି ଯା ତମେ ବି ମାନିଯା ନାରୁଖାରୁ ତମେ ବୃଥାଟାରେ ତାଙ୍କ ସାଙ୍ଗରେ ମୋତେ ବାହା ହୁଅନ୍ତୁ ମୋତେ ବାହା ହୁଅନ୍ତୁ ବୋଲି ହରଦମ୍ ଝମେଲା କରୁଥିଲ ବୋଲି ମାନି ଯା । ସାର୍ କ୍ଷମା କରିଦେବେ । ସାର୍ ! ଆମକୁ କ୍ଷମା କରି ଦିଅନ୍ତୁ । କିଛି ଗୋଟେ ଶୀଘ୍ର କରନ୍ତୁ ।

ବୀରେ- ହିଁ... ହିଁ... ଶୀଘ୍ର କିଛି ଗୋଟେ କରିବାକୁ ହବ । କଥାଟା ଭାରି ଗୁରୁତର । ଖାଲି ଉଠେଇନବା କେସ୍ ନ ହେଇ ମର୍ଡର କେସ୍ ବି ହେଇପାରେ ।

ଶଙ୍ଖ- ମର୍ଡର କେସ୍ ବି ହେଇପାରେ ? ମାନେ... ମାନେ... ଶାଲା ଦେବୀଙ୍କୁ- My God ! ସାର୍- ମୋତେ ବି ଆପଣ ମର୍ଡର କରି ଦିଅନ୍ତୁ ସାର୍ ମୁଁ ଆଉ ଜମା ବଞ୍ଚି ପାରିବି ନାହିଁ । (ଆବୃତ୍ତି) ହାରିବି ଜୀବନ ମୁହିଁ ହୋଇବି ସହିବି/ କି ହେବ ରଖି ଏ ପ୍ରାଣ...

ନାରୁ- (ମଝିରେ) ଶଙ୍ଖବାବୁ !

ଶଙ୍ଖ- (ସେ କଥା ଉପରେ ଗାଇଲା) ନାହାନ୍ତି ସେ ଯଦି/ ନିହାତି ବାଜେ ଲୋକଟେ ଟିକେ ନାହିଁ ବୁଦ୍ଧି/ ବାହା ହେବି ବୋଲି କଲା ହରଦମ୍ ଜିଦି/ ଶେଷରେ ସଫେଇ ପଙ୍କେ...

ନାରୁ- (କିଞ୍ଚିତ ଉଚ୍ଚସ୍ୱରରେ) ଶଙ୍ଖବାବୁ !

ବୀରେ- ଶଙ୍ଖବାବୁ ! ଧୈର୍ଯ୍ୟ... ଧୈର୍ଯ୍ୟ... । ବିପଦ ସମୟରେ ପ୍ରଥମ ହେଲା ଧୈର୍ଯ୍ୟ । ଆଚ୍ଛା ନାରୁବାବୁ ! ଶଙ୍ଖବାବୁ ! ଆପଣମାନେ ଆମ ହତା ଭିତରେ କାଲି ଅଧ ରାତିରେ କିଛି ଘଟିବାର ଦେଖିଛନ୍ତି ?

ଶଙ୍ଖ/ ନାରୁ- (ପ୍ରାୟ ଏକ ସଙ୍ଗେ) ନାଇଁ ତ ସାର୍ ।

ବୀରେ- (ଟିକେ ରହି) କାଲି ରାତି ପ୍ରାୟ ଗୋଟାଏ ବେଳେ ମୁଁ ଦେଖିଲି- (ରହିଗଲେ) ।

ଶଙ୍ଖ- କଣ ଦେଖିଲେ ସାର୍ ?

ବୀରେ- ଦେଖିଲି କେହି ଜଣେ ସ୍ତ୍ରୀ ଲୋକ...

ଶଙ୍ଖ- କେହି ଜଣେ ସ୍ତ୍ରୀ ଲୋକ- ରାତି ଗୋଟାଏ ବେଳେ ?

ବୀରେ- ଯା'ଭିତରୁ ବାହାରି ବାହାରକୁ ଗଲେ ।

ଶଙ୍ଖ- ସାର୍... ସାର୍- ସେଇ... ସେଇ... ସେଇ- ସାର୍ ! ସେ କଣ କଳା ଶାଢି ପିନ୍ଧିଥିଲେ ?

ନାରୁ- ନାଇଁ ସାର୍ ସେ ନିଶ୍ଚେ ନାଲି ଶାଢି ପିନ୍ଧିଥିବେ ।

ଶଙ୍ଖ- ହଃଃ- ନାଲି ଶାଢି ପିନ୍ଧିଥିବେ ! ତୁମେ ଦେଖିଚ ?

ନାରୁ- କଳା ଶାଢି ପିନ୍ଧିଥିଲେ ତୁମେ ଦେଖିଚ ?

ଶଙ୍ଖ- ତମେ ଦେଖିଚ ?

ନାରୁ- ତମେ ଦେଖିଚ ? ଗାଲୁଆ ।

ଶଙ୍ଖ- Shut up !

ନାରୁ- You shut up !

ବୀରେ- ଶଙ୍ଖବାବୁ ! ନାରୁବାବୁ ! ଧୈର୍ଯ୍ୟ... ଧୈର୍ଯ୍ୟ । ହଁ- ମୁଁ ଯାହା କହୁଥିଲି ସେ ଗଲେ ଯେ ଆଉ ଆସିଲେ ନାହିଁ ।

ଶଙ୍ଖ- (ଉତ୍ତେଜିତ) ଆଉ ଆସିଲେ ନାହିଁ ? ମୁଁ ଜାଣିଚି ସାର୍ ସେ ଆଉ ଆସିବେ ନାହିଁ । (ଦୁଃଖ ସହ ଗାଇଲା) ଗଲା ଯେ ଆସିଲା ନାହିଁ ଆଉ ନ ଆସିବ/ ମୁଗୁରା ମୁହଁକୁ ଚାହିଁ ଚାହିଁ ଦିନ ଯିବ/ ମାଛ ଆଶାକୁ ଏଥର ଛାଡ ନାରୁଖାରୁ/ ବାଆଜୀ ହୋଇ ବନସ୍ତେ ଖୋଜ ବଣସାରୁ/ ଗଲା ଯେ ଆସିଲା ନାହିଁ...

ନାରୁ- (ମଝିରେ) ଶଙ୍ଖବାବୁ ! (ବୀରେଶ୍ୱରଙ୍କୁ) ତାପରେ କଣ ହେଲା ସାର୍ ?

ବୀରେ- ତାପରେ କଣ ହେଲା ମୁଁ କହିପାରିବି ନାହିଁ । ମୋ ସ୍ତ୍ରୀ କହିପାରନ୍ତି ।

ନାରୁ/ ଶଙ୍ଖ- (ଭାରି ଆଶ୍ଚର୍ଯ୍ୟ । ପ୍ରାୟ ଏକ ସଙ୍ଗେ) ଆପଣଙ୍କ ସ୍ତ୍ରୀ ?

ଶଙ୍ଖ- ସାର୍ ! ମାନେ ମାନେ ଆପଣ ଏ ଭିତରେ ବାହା ହେଇଗଲେଣି ? କେବେ ଏ ଦୁର୍ଘଟଣାଟି ଘଟିଲା ସାର୍ ?

ବୀରେ- ପନ୍ଦର ଦିନ । ରେଜିଷ୍ଟ୍ରି ମ୍ୟାରେଜ୍ ।

ଶଙ୍ଖ- ସାର୍ ! ଆପଣ ଆମକୁ ଏତେ ପ୍ରବଚନ ଦଉଁ ଦଉଁ ନିଜେ ବାହା ହେଇ ସାରିଲେଣି ? ହରି ହେ ଗୌରହରି ! ଯେ କଣ ସେଇ ମାୟା ମଚ୍ଛିନ୍ଦରଙ୍କ ଖେଳ୍ ? ସାର୍ ତାଙ୍କୁ ଟିକେ ଡାକିବେ କି ଆମେ ଦେଖିବୁ- ଶୀଲା ଦେବୀଙ୍କ କଥା ଶୁଣିବୁଁ । ମନଟା ଭାରି ଉଚାଟ ହଉଚି ।

ବୀରେ- ଡାକୁଚି । (ଡାକିଲେ) ଶୁଣୁଚ ? ଏଠିକି ଆସ ।

ଶୀଳା- (ଭିତରୁ) ଆସୁଚି । (ହାତରେ ଚାହାଟ୍ରେ ଧରି ଆସିଲା ଓ ଟେବୁଲ ଉପରେ ରଖିଲା । ବୀରେଶ୍ୱର ବସିବାକୁ ଇଙ୍ଗିତ ଦେଲେ । ସେ ବସିଲା) ।

ଶଙ୍ଖ/ ନାରୁ- (ବଡ ବଡ ଆଖିରେ ଶୀଳାକୁ ଚାହିଁ) ସାର୍ ଯେତ...

ବୀରେ- ମୋ ସ୍ତ୍ରୀ ।

ଶଙ୍ଖ- ଆପଣଙ୍କ ସ୍ତ୍ରୀ ? ହରିହରି... ହରିହରି- କିସ ପୁଣି ଦେଖା ନ ଯାଏ ବଞ୍ଚିଥିଲେ ଜୀବରେ ? ସାର୍ ଆପଣ ତ କହୁଥିଲେ ଏ ସଂସାରଟା ମିଛମାୟାର ସଂସାର । ଯେ ଯୋଉ ଦେବୀ ଆମ ଆଗରେ ବସିଚନ୍ତି ସେ କଣ ମିଛ ନା ମାୟା ?

ବୀରେ- (ହସି ଉଠିଲେ । ଶୀଳା ମଧ ମୁରକି ମୁରକି ହସିଲା) ।

ଶଙ୍ଖ- ସାର୍ ! ମୋ ଛାତିକି ଏଥର ଏକା ସାଙ୍ଗରେ ଦି'ଚାରିଟା ଖଣ୍ଡେ ଗୁଳି ମାରି ଦେଇ ପାରିବେ ସାର୍ ?

ବୀରେ- (ହସି ଉଠିଲେ) ହାଃ... ହାଃ... ହାଃ... । ଶୀଳା ! ଆମର ଭଡାଟିଆ ବନ୍ଧୁମାନଙ୍କୁ ତୁମେ ଚିହ୍ନ ନିଶ୍ଚୟ ।

ଶଙ୍ଖ- ନାଇଁ ସାର୍ ମ୍ୟାଡାମ୍ ଆମକୁ ଜମା ଚିହ୍ନି ନ ଥିବେ । ସେଇଥିପାଇଁ ମୁଁ ଟିକେ ଚିହ୍ନା କରେଇ ଦଉଚି । ମୋ ନାଁ ହଉଚି ବଲାଙ୍ଗିରୀଆ କୁଆ । ଆଉ ସେ ବାବୁଙ୍କ ନାଁ ହଉଚି ବାରିପଦିଆ ଭୁଆ । ତାଙ୍କର ମୁଣ୍ଡବୁଲା ରୋଗ ଅଛି । ମୋର ପାଦଖସା ରୋଗ ଅଛି । ସେ ବାବୁ ରାତି ତିନିଟାରେ ନୂଆ କଳା ପେଣ୍ଟ ଧଳାଜାମା ପିନ୍ଧି ଧଳା ପତାକା ଉଡେଇ ଦୁର କରିବାକୁ ସାତ ଆଠ କିଲୋମିଟରେ ଯାନ୍ତି । ମୁଁ ରାତି ଦିଟାରେ ହଳଦିଆ ସଫରି ସୁଟ୍ ପିନ୍ଧି ହାତରେ ମଲ୍ଲୀମାଳ ଗୁଡେଇ ଅନ୍ଧାର ଭିତରେ କଳା ଜିନିଷମାନଙ୍କୁ ଖୋଜୁଥାଏ । ହେଲେ ସାର୍, ଏଇ ଯୋଉ ଦୁର୍ଘଟଣାଟି ଘଟିଗଲା ସେଟା କଣ ଗୋଟେ ଦୈବୀ ଦୁର୍ଘଟଣା ?

ବୀରେ- ସେଥିପାଇଁ କିନ୍ତୁ କମ୍ପାନୀ ଦାୟୀ ନୁହେଁ । (ହସିଲେ) ହାଃ ହାଃ ହାଃ ।

ଶଙ୍ଖ- ଆମର ଦୈବୀ ଦୁର୍ଘଟଣାକୁ କମ୍ପାନୀ ଦାୟୀ ନୁହେଁ ନାଟକ ହଠାତ୍ ଏଇଠି ସରିଗଲା ସାର୍ ଆମେ ଏଥର ଏଠି ବସି ଟିକେ କନ୍ଦାକଟା କରିପାରିବୁଁ ? ମ୍ୟାଡାମ୍ ଶୀଲା ଦେବୀ ! ତାହା ନୁହେଁ ଆପଣ ବରଂ ଆମକୁ କିଛି ଚୋଲ୍‌କୀ ମାର୍କା ଉକୁଣୀମାରି ଚୂର୍ଣ୍ଣ ଆଉ ଖୋଲ୍‌କୀମାର୍କା ଯାଦୁର ମଲମ ପକେଇ ଦି କପ୍ ଆଲ୍‌କାତରା ଦେଇ ପାରିବେ ଆମେ ମୁହଁରେ ବୋଳିବୁଁ ? ହେ। ନାରୁବାବୁ ! ସେମିତି ଭେଲ୍‌କାଙ୍କ ପରି ଅନେଇ ରହିଚ କଣ ? ଏଥର ମୋ ସାଙ୍ଗରେ ମିଶି କାନ୍ଦ । (ଆବୃତ୍ତି) ।

କିଏ ଜାଣିଥିଲା ଚୋଲରେ ମୂଷା ଲୋ କମ୍ପାନୀ
ଆଖି ଥାଇ ଆମେ ହେଲୁ କଣକା ଲୋ କମ୍ପାନୀ
ଏତେ କଥା ତୋର ମନରେ ଥିଲା ଲୋ କମ୍ପାନୀ
ଆମ ବୁଦ୍ଧିକି ତ ଯାଦୁ ଖାଇଲା ଲୋ କମ୍ପାନୀ
ପ୍ରେମ ପ୍ରେମ ବାବା ବଡ ଝମେଲା ଲୋ କମ୍ପାନୀ
ଆଉ ଦିନେ ନ କରିବୁଁ ସେ ପାଲା ଲୋ କମ୍ପାନୀ
ଶଙ୍ଖ, ନାରୁ, ଶୀଲା ଅଧା ସରିଲା ଲୋ କମ୍ପାନୀ
ବୀର ଶୀଲା ପଞ୍ଚାମୃତ ଲାଗିଲା ଲୋ କମ୍ପାନୀ

(ଉଚ୍ଚସ୍ୱରରେ) ଆନନ୍ଦେ ଏକବାର ହରିବୋଲ- ଆନନ୍ଦେ ଏକବାର ହରିବୋଲ- ହରିବୋଲ

(ଶୀଲା ସମେତ ସମସ୍ତେ ଉଚ୍ଚସ୍ୱରରେ
ହସି ଉଠିଲେ)

--- ० ---